# ଗୋବିନ୍ଦ ଭଜ ମୁଢ଼ମତେ



ସୁଧୀର କୁମାର ଭୂୟା

# ଗୋବିନ୍ଦଂ ଭଜ ମୂଢ଼ମତେ

ପ୍ରଦୀପ କୁମାର ରଥ



ଉପଗୁପ୍ତ ପବ୍ଲିକେଶନ୍‌ସ
ଗିରିରୋଡ୍, ବ୍ରହ୍ମପୁର—୨

# ଗୋବିନ୍ଦଂ ଭଜ ମୂଢ଼ମତେ

( ନାଟକ )


ଲେଖକ : ପ୍ରଦୀପ କୁମାର ରଥ

ପ୍ରକାଶକ : ଉପଗୁପ୍ତ ପବ୍ଲିକେଶନ୍ସ
ଗିରିରୋଡ଼, ବ୍ରହ୍ମପୁର-୭୬୦୦୦୫

ମୁଦ୍ରଣ ସନ୍ତୋଷ ପ୍ରିଣ୍ଟର୍ସ
ପୁରୁଣା ବ୍ରହ୍ମପୁର, ବ୍ରହ୍ମପୁର-୯

ପ୍ରଥମ ପ୍ରକାଶ : ଅକ୍ଷୟ ତୃତୀୟା, ୧୯୯୦

ପ୍ରଚ୍ଛଦ ଶିଳ୍ପୀ : ବସନ୍ତ ପଟ୍ଟନାୟକ

ମୂଲ୍ୟ : ତେର ଟଙ୍କା


# Gobindam Bhaja Mudhamate


Drama by :
**Pradeep Kumar Rath**

Publisher :
**Upagupta Publications**
Giri Road, Berhampur-760005

Printed by :
**Santosh Printers,**
Old Berhampur, Berhampur-9

Cover Design :
**Basanta Patnaik**

First Edition : **April 1990**

Price Rs. 13/-

"ଜୀବନର ଚରମ ଦୂରେ
ଦୂର୍ଦ୍ଦିନରେ ଯେଉଁଠି ହୁଏ ହୃଦୟ ଓ ବିବେକ ଆଦର୍ଶ
ଜୀଇଁବାଟା ବୋଧହୁଏ ଜୀବନର ସବୁଠାରୁ ସତ
ତା' ଠାରୁ ବି ସତ ବୋଧେ ଆଦର୍ଶର ହତ୍ୟା ଆଜ
ବିବେକ ମୃତ୍ୟୁର କାହାଣୀ"

ଚନ୍ଦ୍ରମାର ଚୂଢ଼—ରମାକାନ୍ତ ରଥ

# ଏଇ ନାଟକ ସଂପର୍କରେ

ଓଡ଼ିଆ ନାଟକ ବର୍ତ୍ତମାନ ରଙ୍ଗମଞ୍ଚବିହୀନ 'ସୌଖିନ୍ କଳାକାର-ମାନଙ୍କର ସାମୟିକ ଲୀଳାଭୂମି । କୌଣସି ମହାବିଦ୍ୟାଳୟ ନାଟ୍ୟସଂସ୍ଥାର ବାର୍ଷିକ ଉତ୍ସବ କିମ୍ବା ପ୍ରତିଯୋଗିତା ପାଇଁ ବ୍ୟସ୍ତମୁଖର ପ୍ରସ୍ତୁତି ବ୍ୟତୀତ ନାଟକ ପାଇଁ କୌଣସି ଆଦର ମଞ୍ଚ ନାହିଁ । ଓଡ଼ିଆ ନାଟକର ଶହେ ବର୍ଷର ଇତିହାସରେ ନାଟ୍ୟକାର ଆଜି ମୁଦ୍ରିତ ନାଟକ ହିଁ ପରିବେଷଣ କରିବା ପାଇଁ ବାଧ୍ୟ ହୁଏ । ଯଦିବା କୌଣସି ସହରର କେତେ ଜଣ ଉତ୍ସାହୀ କଳାକାର ନାଟକ ମଞ୍ଚସ୍ଥ କରନ୍ତି, ସେମାନଙ୍କ ପ୍ରସ୍ତୁତି ଗୋଟିଏ ବା ଦୁଇଟି ରାତି ପାଇଁ ଉଦ୍ଦିଷ୍ଟ । କୌଣସି ନାଟ୍ୟସଂସ୍ଥା ମାସେ ଦୁଇ ମାସ ପାଇଁ ଗୋଟିଏ ନାଟକ ପରିବେଷଣ କରିବା ଲାଗି ପ୍ରସ୍ତୁତ ହେବା ଦେଖାଯାଏ ନାହିଁ । ହୁଏତ କେବଳ ନାଟ୍ୟକାର ତାର ମଧ୍ୟରାତିର ସ୍ତବ୍ଧ କଥାର ପଲକମାନଙ୍କରେ କେତୋଟି ଚରିତ୍ର ଓ ସଂଳାପ ଧରି ତାର ଅଧାବୁଜା ଆଖି ଆଗରେ କଳ୍ପନାଦୃଶ୍ୟ ସୃଜନ କରେ ଆତ୍ମବିଭୋର ପ୍ରେମିକ ତାର ମିଳନଦୃଶ୍ୟ ପରିକଳ୍ପନା କଲାପରି । ଏପରି ଅବସ୍ଥାରେ ନୂଆ ନାଟକଟିଏ ଦେଖିଲେ ବା ପଢ଼ିଲେ କିଛି ନୂଆ ଉତ୍ସାହ ମନରେ ଆସେ : ହୁଏତ କିଛି ଅଶାନ୍ତ ଲୋଭ ଯାଏ; କିଛି ବର୍ତ୍ତମାନର ଶୂନ୍ୟତା ନିଃସ୍ୱ କରିଦିଏ !

ଏପରି ଏକ ପ୍ରଶାନ୍ତ ମୁହୂର୍ତ୍ତରେ ପ୍ରଦୀପ କୁମାର ରଥଙ୍କର "ଗୋବିନ୍ଦ' ଭଜ ମୂଢ଼ମତେ" ପଢ଼ିକରି ମୁଁ ଆନନ୍ଦ ଓ ଦୁଃଖରେ ଆତ୍ମଲୀନ ହେଲି । ନାଟକ ପରି ଚରମ ସମ୍ଭାବନାମୟ ଆଙ୍ଗିକର ଆଦର ନକରି ଓଡ଼ିଆ ଯେ କେତେ କଣ ହରାଇ ବସିଛି, ସେ କଥା ଭାବି ମନଟା ବେଦନାର୍ତ୍ତ ହେଲା । ନାଟକ ହିଁ ଏକମାତ୍ର କଳା ଯେଉଁଠି ନାଟ୍ୟକାର ଓ ଜନତା ମୁହାଁମୁହିଁ ହୋଇ ବସନ୍ତି । ନାଟକର ସମ୍ବେଦନଶୀଳତା

ତାତ୍‌କ୍ଷଣିକ ଓ ସ୍ୱୟଂସଂପୂର୍ଣ୍ଣ । ଏବଂ ଏହା ମାଧ୍ୟମରେ ସମାଜ ଓ ସଂସ୍କୃତିର ଅନେକ ପରିବର୍ତ୍ତନ ଅଣାଯାଇ ପାରେ । ଆନ୍ଦୋଳନ କରାଯାଇ ପାରେ । ଯଦି ନାଟ୍ୟକାରର ସମାଜ ସଚେତନତା ଓ ବିଶୁଦ୍ଧ ଧାରଣା ଉପସ୍ଥିତ ସଭ୍ୟତାର ସମ୍ୟକ୍ ମୂଲ୍ୟାୟନ କରି ନୂତନ ସଭ୍ୟତା ଓ ମୂଲ୍ୟବୋଧର ଚିତ୍ର ନିଖୁଣ ଭାବେ ଗଢ଼ିପାରେ ଓ ପରିବେଷଣ କରିପାରେ, ସମାଜର ଅବକ୍ଷୟ ଓ ଭ୍ରଷ୍ଟାଚାର ଦୂର କରାଯାଇ ପାରେ । ନାଟକ, ଜୀବନର ନିକଟତମ କଳା ଏବଂ ସବୁଠାରୁ ବେଶି ପ୍ରଭାବଶାଳୀ ମଞ୍ଚ ।

ଏହି ଦୃଷ୍ଟିରୁ ପ୍ରତାପ ରଥଙ୍କର 'ଗୋବିନ୍ଦଂ ଭଜ ମୂଢ଼ମତେ' ମଞ୍ଚପାଇଁ ଏକ ପ୍ରଭାବଶାଳୀ ନାଟକ । ନାଟ୍ୟକାର ସ୍ୱାଧୀନୋତ୍ତର ଭାରତ ତଥା ଆଧୁନିକ ପୃଥିବୀର ଜୀବନଧାରାର ପ୍ରତୀକ ବିଭବ ପ୍ରତି ଆନ୍ଦୋଳନର ଆହ୍ୱାନ ଦିଅନ୍ତି । ଭ୍ରଷ୍ଟାଚାର, ମୂଲ୍ୟବୋଧର ଅପଚୟ ଏବଂ ସର୍ବୋପରି ଆନୁଷ୍ଠାନିକ ଧର୍ମ ଓ ରାଜନୀତିର ଛଳନାମୟ ଧ୍ୱଂସକାରୀ ଶକ୍ତିର ପ୍ରତିଷ୍ଠା ବିରୁଦ୍ଧରେ ସଂଗ୍ରାମ ପାଇଁ ପରୋକ୍ଷ ଆହ୍ୱାନ ନାଟକକୁ ସମାଜମୁଖୀ କରାଇଛି । ବର୍ତ୍ତମାନ ଜୀବନର ଆଚରଣ କପଟ ଇତିହାସ ସିଦ୍ଧ ମୂଲ୍ୟବୋଧ ଓ ଯୁଗପୁରୁଷମାନଙ୍କର ଆଦର୍ଶକୁ ହତ୍ୟା କରି ପାପ ଓ ଭୟର ଅପସଂସ୍କୃତି ସ୍ଥାପନ କରିଛି, ତାର ସାଙ୍କେତିକ ଚିତ୍ର ମିଳେ ଏଇ ନାଟକରେ । ଆଧୁନିକ କୌଶଳ ଓ ପରିବେଷଣ କଳାରେ ନାଟକଟି ପରିପୁଷ୍ଟ । ଯଦିଓ ପାଶ୍ଚାତ୍ୟ ନାଟ୍ୟକାର, ବିଶେଷ କରି ବେକେଟ୍ ଓ ଅନ୍ୟାନ୍ୟ ୟୁରୋପୀୟ ନାଟ୍ୟକାରମାନଙ୍କର କଳା କୌଶଳର ପ୍ରଭାବ ବାରି ହୁଏ, ତଥାପି ନାଟ୍ୟକାରଙ୍କ ମୌଳିକତା ମନକୁ ଛୁଏଁ । ବିଶେଷ କରି ଏକ ସୁସ୍ଥ, ମୂଲ୍ୟବୋଧାଶ୍ରୟୀ ଆଦର୍ଶ ସମାଜ ଓ ଜୀବନ ଗଠନ ପାଇଁ ନାଟକୀୟ ଉତ୍ସାହ, ନାଟ୍ୟକାରଙ୍କ ନିଷ୍ଠା ପ୍ରତି ଆଗ୍ରହ ସୃଷ୍ଟି କରେ । ଅବଶ୍ୟ ନୂତନ ସମାଜ କଣ ରୂପ ନେବ, କପରି ନେବ ଏବଂ କେଉଁମାନେ ତାର ନେତୃତ୍ୱ ନେବେ, ସେ କଥା ସ୍ପଷ୍ଟ ନୁହେଁ ଗୋବିନ୍ଦଂ ଭଜ...ନାଟକରେ । କଳ୍କି ପରି ଅବତାର ପୁରୁଷ କମ୍ପା

ପାରଂପରିକ ମୂଲ୍ୟବୋଧର ସାକାର ପ୍ରତିମା କିଛି ବିଚିତ୍ରାନୁଷ୍ଠାନ ଘଟାଇ ପାରେ—ଏପରି ବିଶ୍ୱାସରେ ନାଟକ ଶେଷ ହୁଏ । ତେଣୁ ନାଟକର ନାମକରଣ ଏକ ପକ୍ଷରେ ବିରୋଧାଭାସ ପରି ଲାଗିଲେ ମଧ୍ୟ ଅନ୍ୟ ପକ୍ଷରେ ଜଗନ୍ନାଥଙ୍କ ଦେବ ଆରାଧନା ଭାବେ ଅନ୍ୟାୟ ବିରୁଦ୍ଧରେ ଆମର ପାରଂପରିକ ଅପାରଗତାକୁ ଦୋହରାଏ ।

ପ୍ରଦୀପ ରଥଙ୍କ ନାଟ୍ୟ ପ୍ରତିଭା ଅନେକ ସମ୍ଭାବନାର ପ୍ରତିଶ୍ରୁତି ବହନ କରେ । "ଗୋବିନ୍ଦ ଭଜ" ଓଡ଼ିଶାର ପାଠକ ଓ ଦର୍ଶକମାନଙ୍କ ହୃଦୟରେ କିଛି ଆବେଗ ସୃଷ୍ଟି କରିବ ବୋଲି ମୋର ବିଶ୍ୱାସ ।

**ପ୍ରଫୁଲ୍ଲ କୁମାର ମହାନ୍ତି**
ପ୍ରଫେସର ଓ ବିଭାଗୀୟ ମୁଖ୍ୟ
ଇଂରାଜୀ ବିଭାଗ, ଖଲ୍ଲିକୋଟ ମହାବିଦ୍ୟାଳୟ, ବ୍ରହ୍ମପୁର

# ପାଠକୀୟ ମନ୍ତବ୍ୟ

ନାଟ୍ୟକାର ପ୍ରଦୀପକୁମାର ରଥଙ୍କ 'ଗୋବିନ୍ଦଂ ଭଜ ମୂଢ଼ମତେ' ନାଟକଟି ପାଠ କରିବାର ସୁଯୋଗ ପାଇଥିବାରୁ ମୁଁ ଅତ୍ୟନ୍ତ ଆନନ୍ଦିତ। ସେ ଓଡ଼ିଆ ସାହିତ୍ୟରେ ଜଣେ ନବାଗନ୍ତୁକ ହେଲେ ମଧ୍ୟ ଜଣେ ସଫଳ ପ୍ରୟୋଗବାଦୀ ନାଟ୍ୟକାର ଭାବେ ତାଙ୍କ କୃତିତ୍ୱ ଅବିସମ୍ବାଦିତ। ପୂର୍ବରୁ ପ୍ରକାଶିତ ଓ ବହୁସ୍ଥାନରେ ମଂଚସ୍ଥ ନାଟକ 'ଅବସନ୍ନ ଜାହ୍ନବୀ' ନାଟ୍ୟକାରଙ୍କ ଗୁଣ ଶକ୍ତିରେ ଅନେକାଂଶରେ ସହାୟକ ହୋଇଛି। ଜଣେ ସମାଜ ସଚେତନ ବାସ୍ତବବାଦୀ ନାଟ୍ୟକାର ଭାବରେ ତାଙ୍କର ସ୍ୱାତନ୍ତ୍ର୍ୟ ପ୍ରକାଶରେ ଏହି ନାଟକଟିର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ। ଭାବବସ୍ତୁ ଓ ଅଙ୍ଗସଜ୍ଜା ଉଭୟ ଦୃଷ୍ଟିରୁ ସେ ଜଣେ ସଫଳ ନାଟ୍ୟକାର। ତାଙ୍କର ସଦ୍ୟୋଜାତ 'ଗୋବିନ୍ଦଂ ଭଜ ମୂଢ଼ମତେ' ନାଟକଟି ଏହାର ପ୍ରକୃଷ୍ଟ ନିଦର୍ଶନ।

ସଂପ୍ରତି ଟି. ଭି. ର ଆଦର, ଚଳଚ୍ଚିତ୍ରର ବ୍ୟାପକ ପ୍ରସାର, ବେତାର ନାଟକ ପ୍ରତି ଅନୁରାଗ ମଧ୍ୟରେ ସୌଖିନ ନାଟ୍ୟ ସଂସ୍ଥାଗୁଡ଼ିକର ଯେ ବିଲୟ ଘଟିଛି, ଏହା ବୁଝାଇ କହିବା ନିଷ୍ପ୍ରୟୋଜନ। ଏକଦା ଯେପରି ମନୋରଞ୍ଜନ ଦାସ, ବିଜୟ ମିଶ୍ର, ବିଶ୍ୱଜିତ୍ ଦାସ ପ୍ରମୁଖ ସୌଖିନ ନାଟ୍ୟ ସଂସ୍ଥା ମାଧ୍ୟମରେ ସେମାନଙ୍କ କୃତିତ୍ୱ ପ୍ରଦର୍ଶନ କରି ପାରିଥିଲେ, ଏବେ ସେପରି ଅବସ୍ଥା ନାହିଁ କହିଲେ ଚଳେ। ଅଧୁନା ନାଟକଟିଏ ଲେଖି ମଞ୍ଚସ୍ଥ କରିବା ପାଇଁ ନା ଅଛି ସୌଖିନ 'ନାଟ୍ୟସଂସ୍ଥା', ନା ଅଛି ବ୍ୟାବସାୟିକ ରଙ୍ଗମଂଚ। ଫଳରେ ଆଜି ନାଟକ ରଚନା ଅପେକ୍ଷା ନାଟକଟିକୁ ରଙ୍ଗମଂଚରେ ଅଭିନୟ କରାଇବା ହୋଇଛି ଏକ ଅସାଧ୍ୟ ବ୍ୟାପାର। ଏ ସନ୍ଦର୍ଭରେ ନାଟକ ରଚନା କରିବାକୁ ନାଟ୍ୟକାରମାନେ ବିରତ ହୋଇ ନାହାନ୍ତି। ଯେତେ କଷ୍ଟକର ହେଲେ ମଧ୍ୟ ମଝିରେ ମଝିରେ ଓଡ଼ିଶାରେ କଟକ, ଭୁବନେଶ୍ୱର, ପୁରୀ, ବ୍ରହ୍ମପୁର, ରାଉରକେଲା ପ୍ରଭୃତି ସହରମାନଙ୍କରେ ଓ ଶିକ୍ଷାନୁଷ୍ଠାନମାନଙ୍କରେ କିଛି କିଛି ନାଟକ ଅଭିନୀତ ହେଉଛି। ମଞ୍ଚଶିଳ୍ପର ଏଭଳି ଏକ ସଙ୍କଟଜନକ ପରିସ୍ଥିତିରେ ପ୍ରଦୀପକୁମାର

ରଥ ନାଟକ ରଚନାରେ ମନୋନିବେଶ କରିଛନ୍ତି । ସମସ୍ତ ପ୍ରତିକୂଳ ବାତାବରଣ ସତ୍ତ୍ୱେ ନାଟକ ଲେଖିବାର ମୋହ ତାଙ୍କର ପ୍ରବଳ । କାରଣ ଖୁବ୍ ଅଳ୍ପ ସମୟ ବ୍ୟବଧାନରେ ତାଙ୍କର ଦୁଇଟି ଉଚ୍ଚକୋଟୀର ନାଟକ ପ୍ରକାଶିତ । 'ଅବସନ୍ନ ଜାହ୍ନବୀ' ଓ 'ଗୋବିନ୍ଦଂ ଭଜ ମୂଢ଼ମତେ' ନାଟକ ଦୁଇଟିକୁ ଅଭିନୟ କରାଇବାରେ ସେ ମଧ୍ୟ ସଫଳ ହୋଇଛନ୍ତି । ଫୁଲବାଣୀ ଭଳି ଆଦିବାସୀ ଅଧ୍ୟୁଷିତ ଅଂଚଳରେ ନାଟ୍ୟକାର ରଥଙ୍କ ନାଟକ ମଂଚସ୍ଥ ହେବା ଯଥାର୍ଥରେ ବିଶେଷ ଗୌରବର ପରିଚାୟକ ।

ପ୍ରଥାପନ୍ଥୀ ରଥଙ୍କ 'ଗୋବିନ୍ଦଂ ଭଜ ମୂଢ଼ମତେ' ନାଟକଟି ପ୍ରଚଳିତ ସାମାଜିକ ବ୍ୟବସ୍ଥା ବିରୁଦ୍ଧରେ ଏକ ପ୍ରତିବାଦ । ଜୀବନର କଠିନ ସତ୍ୟର ସମ୍ମୁଖୀନ ହେବାକୁ ନାଟ୍ୟକାର ଆଦୌ ବିମୁଖ ନୁହନ୍ତି । ଯୁଗ ଓ ଜୀବନର ବାସ୍ତବ ଆଭିମୁଖ୍ୟ ପ୍ରତି ଶ୍ରଦ୍ଧା ତାଙ୍କ ନାଟକରେ ସର୍ବତ୍ର ସୁଲଭ । ପୁଣି ବାସ୍ତବତା ଯେତେ କଠିନ ଓ ରଙ୍ଗହୀନ ହେଲେ ବି ତାକୁ ଜନଗଣର ଅନ୍ତରଙ୍ଗ ଭାଷାରେ ରୂପ ଦେବାରେ ସେ ଧୁରୀଣ । ସ୍ୱାଭାବିକ ଢ଼ଙ୍ଗରେ ସାଂପ୍ରତିକ ସମାଜର ସ୍ଖଳନ, ହୀନମନ୍ୟତା, ମଣିଷର ଅନ୍ତର୍ନିହିତ ସ୍ୱଭାବ ଓ ନାଟକୀୟ ଦ୍ୱନ୍ଦ୍ୱ ଉପସ୍ଥାପନରେ ତାଙ୍କର ନିଷ୍ଠା କିଛି କମ୍ ନୁହେଁ । ତାଙ୍କର ପ୍ରକାଶ, ରାଜୁ, ପ୍ରଶାନ୍ତ, ଅଜୟ, ସଂପୂର୍ଣ୍ଣାନନ୍ଦ ପ୍ରଭୃତି ଚରିତ୍ର ଆମ ସାମାଜିକ ଜୀବନର ପ୍ରତିଭୂ । ସେମାନଙ୍କର କର୍ମ-କୃତିତ୍ୱ, କଥୋପକଥନ, ସର୍ବାଙ୍ଗୀନ ଶଠତା ଓ ଦେହଧର୍ମର ଉଦଗ୍ର ପ୍ରବୃତ୍ତି ଭିତରେ ଆମର ପ୍ରଚଳିତ ସାମାଜିକ କ୍ରିୟାକଳାପର ଚିତ୍ର ବେଶ୍ ପରିଛନ୍ନ । ଜୀବନର ସବୁସ୍ତରରେ ମିଥ୍ୟା ଓ ଦୁର୍ନୀତିର ଯେ ପ୍ରବଳ ରାଜପଣ ଏ କଥାଟିକୁ ନାଟ୍ୟକାର ବାରମ୍ବାର ଆମକୁ ସୂଚେଇ ଦେଇଛନ୍ତି । ତା' ଛଡ଼ା ଆଜିର ସାଧୁ ଯେ ସଂଯମ, ଶୃଙ୍ଖଳା ଓ ଆଦର୍ଶ ଅପେକ୍ଷା ଯୌନଚର୍ଯ୍ୟାକୁ ଅଧିକ ଆଶ୍ରୟ କରୁଛି, ଏହା ସଂପୂର୍ଣ୍ଣାନନ୍ଦ ଚରିତ୍ରରୁ ଦିବାଲୋକ ପରି ସ୍ପଷ୍ଟ । ନାଟକଟିର ଚରିତ୍ରଗୁଡିକ ଯେ ସମସାମୟିକ ସମୟର ଉପଯୋଗୀ ଏଥିରେ ସନ୍ଦେହ ନାହିଁ ।

ନାଟ୍ୟକାର ଶ୍ରୀ ରଥଙ୍କ ନାଟକରେ ଆମ ମାଟି, ପାଣି, ପବନର ବାସ୍ନା ଅନୁଭବ କରି ହୁଏ । ଓଡ଼ିଆ ନାଟକ ନାମରେ ଯେଉଁଭଳି ପାଶ୍ଚାତ୍ୟ ଭାବକୁ ଆମଦାନୀ କରାଯାଇ ନାଟକ ଲେଖାଯାଉଛି, ସେ ତା'ର ଘୋର ବିରୋଧୀ । ଅବଶ୍ୟ ତାଙ୍କର ନାଟକମାନଙ୍କରେ ସ୍ଥରେ ସ୍ଥରେ ଓଡ଼ିଆ ଇଂରାଜୀ ମିଶା ସଂଳାପର ବ୍ୟାପକତା ଲକ୍ଷଣୀୟ । ମନେ ହୁଏ ସଭ୍ୟ ସମାଜରେ ଏଭଳି କଥୋପକଥନ ଚାଲିଥିବାରୁ ସେ ଏସବୁକୁ ନାଟକରେ ସ୍ଥାନ ଦେଇଛନ୍ତି ।

ନାଟକ ମଧ୍ୟରେ ଆମ ପରଂପରା ଓ ବାହ୍ୟ ଜଗତରୁ କେତେ-ଗୁଡ଼ିଏ ସୁନ୍ଦର ମିଥ୍ ପ୍ରୟୋଗରେ ନାଟ୍ୟକାର ସଫଳ ହୋଇଛନ୍ତି ।

ପରିବେଶକୁ ରୂପ ଦେବାରେ ନାଟ୍ୟକାରଙ୍କ ନିରୀକ୍ଷଣ ଶକ୍ତି ପ୍ରଶଂସାଯୋଗ୍ୟ । ନାଟକଟିର ଭାଷା ବସ୍ତୁଧର୍ମୀ ହେଲେ ମଧ୍ୟ ପ୍ରାୟତଃ ପ୍ରୀତିକର । କବିତ୍ୱମୂର୍ତ୍ତି ଭାଷାର ସଫଳ ପ୍ରୟୋଗରେ ନାଟ୍ୟକାର ସିଦ୍ଧହସ୍ତ । ପ୍ରସଙ୍ଗକ୍ରମେ ଏଠାରେ ଅନନ୍ୟ ସଂଳାପ ଉଦ୍ଧାର କରାଯାଇ ପାରେ:

"ଜାଣେନା । ମୁଁ କଅଁ ଉଡ଼ିଯାଏ, କାହା ଉପରେ ଜଉଘର ହୁଏ ।
ଲୁଚ ଲୁଚ ଅଜ୍ଞାତ ସାଙ୍କୁଟି ମୁଁ ତ ମଜ୍ଜିଥାଏ କୁମର ଚନ୍ଦ୍ରାରେ
କାହିଁକି ମୋ ମଳଦ୍ୱାର ଥରିଯାଏ
ଶାନ୍ତଭସା ମେଘ କମ୍ପା କ୍ଲାନ୍ତ ତାରାର ଗୁଚ୍ଛରେ
ଶୀତଦିନ ସକାଳର ହେମାଳ ବାଆରେ
ବାଘର ହେଣ୍ଟାଳ ଶବ୍ଦ-ମୁରଲୀର ତାନ
ଶୁଣିବାକୁ ଦଉଡ଼ନ୍ତି ଯେତେ ଗୋପୀଗଣ
ପାହାଡ଼ର ଆରୋହଣ ବାହାଘର ଖେଳ
ଯମୁନା ତୀରରେ ଶୁଭେ ରାଧାର କ୍ରନ୍ଦନ ।"

ଏସବୁ ଯେ ଆଧୁନିକ କବିତା ଏଥିରେ ତିଳେ ହେଲେ ସନ୍ଦେହ ନାହିଁ ।

ନାଟକୀୟ ଉତ୍କଣ୍ଠା ସୃଷ୍ଟିରେ ନାଟକଟିର ଗୁରୁତ୍ୱକୁ ଏଡ଼ାଇ ହେବ ନାହିଁ । ନାଟକଟିଏ ପାଠ କରି ପାଠକ, କମ୍ବା ଦେଖି ଯଦି ଦର୍ଶକ

ଭାବିବା ପାଇଁ କିଛି ମାନସିକ ପ୍ରେରଣା ପାଏ, ତା'ହେଲେ ସେ ନାଟକଟିର କିଛି ନା କିଛି ଗୁରୁତ୍ୱ ବୁଝାପଡେ । ଗୋବିନ୍ଦଂ ଭଜ ମୂଢ଼ମତେ' ନାଟକ ପାଠ କଲେ କିମ୍ବା ଦେଖିଲେ ବାରମ୍ବାର ମଣିଷର ମନକୁ ନାନା ଭାବନା ଆନ୍ଦୋଳିତ କରେ । ସେଥି ପରିପ୍ରେକ୍ଷୀରେ ବୋଧହୁଏ, T. S. Eliot କହିଥିଲେ, "A play should give you something to think about." ଏ ଦୃଷ୍ଟିରୁ ଶ୍ରୀ ରଥଙ୍କ ନାଟକଟି ପ୍ରଭାବଶାଳୀ ।

ନାଟକ ହେଉଛି ଏକ ମିଶ୍ର କଳା । ନାଟ୍ୟକାର ତା'ର ନାଟକର ସାହିତ୍ୟିକ ମର୍ଯ୍ୟାଦା ରକ୍ଷା ପାଇଁ ଯେତିକି ସଚେତନ ଥାଏ, ସେହିପରି ତା'ର ମଞ୍ଚମୂଲ୍ୟ ପ୍ରତି ମଧ୍ୟ ଅଧିକ ସଚେତନ ଥାଏ । ଉଭୟର ସମନ୍ୱୟ ନ ହେଲେ ନାଟକଟି ଉଚ୍ଚକୋଟୀର ହୋଇପାରିବ ନାହିଁ । ଆଜିର ନାଟକ କେବଳ ପ୍ରାଚୀନ ନାଟକ ପରି ମଣିଷର ଚିତ୍ତବିନୋଦନର ସାମଗ୍ରୀ ନୁହେଁ । ଏହା ମଣିଷ ଜୀବନର ରହସ୍ୟ ପ୍ରକଟନରେ ଅଧିକ ବିଶ୍ୱାସୀ । ସାମାନ୍ୟ ମଞ୍ଚ ସଜ୍ଜାରେ ଆଜି ନାଟ୍ୟକାରମାନେ ନିଜ ନାଟକକୁ ମଞ୍ଚସ୍ଥ କରାଇ ପାରୁଛନ୍ତି । ଆଜି ନାଟ୍ୟକାର ପାଇଁ ମଣିଷର ବାସ୍ତବ ପରିପ୍ରକାଶ ବଡ କଥା । ଏ ସକାଶେ ଜୀବନକୁ ବହୁ ବିଚିତ୍ର ଘାତରେ, ବିବିଧ ଅନୁଭୂତିରେ ଓ ରହସ୍ୟପୂର୍ଣ୍ଣ ଭାବରେ ବ୍ୟକ୍ତ ଭାବରେ ନାଟ୍ୟକାରମାନେ ବ୍ୟସ୍ତ । ସୁତରାଂ ଆଜିର ନାଟକ କେବଳ ମନୋରଞ୍ଜନର ସାମଗ୍ରୀ ନୁହେଁ, ବରଂ ଜୀବନର ବାସ୍ତବ ମୁହୂର୍ତ୍ତ, ମଣିଷର ଚେତନ, ଅଚେତନ ଓ ଅବଚେତନ ମନର ଏକ ସ୍ୱଚ୍ଛ ଚିତ୍ରପଟ । ଏସବୁକୁ ଦୃଷ୍ଟିରେ ରଖି ବିଚାର କଲେ 'ଗୋବିନ୍ଦଂ ଭଜ ମୂଢ଼ମତେ' ଓଡ଼ିଆ ନାଟ୍ୟ ସାହିତ୍ୟରେ ଏକ ନୂତନ ସଂଯୋଗ, ଏହା ଦ୍ୱିଧାହୀନ ଭାବେ କୁହାଯାଇପାରେ । ପାଠକୀୟ ମନ୍ତବ୍ୟ ଦେବା ଅବସରରେ ଅଧିକ ଆଲୋଚନା ଅନାବଶ୍ୟକ । ତରୁଣ ନାଟ୍ୟକାର ଶ୍ରୀ ରଥ ଯଶସ୍ୱୀ ହୁଅନ୍ତୁ, ଜୀବନକୁ ଆହୁରି ନିବିଡ ଭାବରେ ଅନୁଭବ କରନ୍ତୁ, ଏତିକି ଆଶା କରି ରହୁଛି ।

ମହାବୀର ଜୟନ୍ତୀ, ୧୯୯୦

ବାଉରୀବନ୍ଧୁ କର
ରିଡର୍, ଓଡ଼ିଆ ବିଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

ଗୋବିନ୍ଦଂ ଭଜ ମୂଢ଼ମତେ ୧୯୮୮ ଜୁଲାଇ ୨୨ ତାରିଖରେ ପୋଲସରା ପଞ୍ଚାୟତ ସମିତି କାର୍ଯ୍ୟାଳୟ ପ୍ରାଙ୍ଗଣରେ ସ୍ୱୟଂଜ୍ୟୋତି କଳାସଂସଦ ଆନୁକୂଲ୍ୟରେ ଅଭିନୀତ ହୋଇଥିଲା ଶ୍ରୀ ପ୍ରଦୀପକୁମାର ମିଶ୍ରଙ୍କ ନିର୍ଦ୍ଦେଶନା ଏବଂ ଶ୍ରୀ ଜୟକୃଷ୍ଣ ଗୌଡ଼ଙ୍କ ସଂଯୋଜନାରେ ।

ଝିଞ୍ଜିରିକାଟ୍ ସାଂସ୍କୃତିକ ପରିଷଦର ଉତ୍ସବ ମିଳନ ଅବସରରେ ଏହାର ପରିବର୍ଦ୍ଧିତ ସଂସ୍କରଣ ଅଭିନୀତ ହେଲା ୧୩ ଏପ୍ରିଲ୍ ୧୯୮୯ ରେ ଝିଞ୍ଜିରିକାଟ୍ ବ୍ଲକ୍ ରଙ୍ଗମଞ୍ଚରେ ।

| | | |
|---|---|---|
| ଉଦ୍‌ଘାଟକ | | ଲକ୍ଷ୍ମୀନାରାୟଣ ମହାପାତ୍ର |
| ବକ୍ତା | | ଅଧ୍ୟାପକ ଗୌରୀପ୍ରସାଦ ମହାପାତ୍ର |
| ଅତିଥି | | ଅଧ୍ୟାପକ ଅରବିନ୍ଦ ପଣ୍ଡା |
| ପ୍ରଶାନ୍ତ | | ସୀମାଞ୍ଚଳ ଗୌଡ଼ |
| ପ୍ରକାଶ | | ଅଧ୍ୟାପକ ବିଜୟକୁମାର ନନ୍ଦ |
| ସମ୍ପୂର୍ଣ୍ଣାନନ୍ଦ | : | ନରସିଂହ କର |
| ବ୍ୟକ୍ତି | : | ଯୁଧିଷ୍ଠିର ମିଶ୍ର |
| ରୂପସଜ୍ଜା | : | ତାରତାରିଣୀ ଚିତ୍ରାଳୟ |
| ଆଲୋକ ଓ ଧ୍ୱନି | : | ତାରତାରିଣୀ ଇଲେକ୍‌ଟ୍ରିକାଲ୍‌ସ୍ |
| ସ୍ମାରକ | : | ଅଧ୍ୟାପକ ଯୋଗେନ୍ଦ୍ର ପାଣିଗ୍ରାହୀ,<br>ପ୍ରସନ୍ନକୁମାର ପଟ୍ଟନାୟକ |
| ସଙ୍ଗୀତ | | ରୂପ ମେଲୋଡି |
| ମଞ୍ଚ | | ଅଧ୍ୟାପକ ପ୍ରଶାନ୍ତରଞ୍ଜନ ପଟ୍ଟନାୟକ,<br>ଅଧ୍ୟାପକ ଗିରିଜାଶଙ୍କର ମିଶ୍ର |
| ନିର୍ଦ୍ଦେଶନା | | ହରପ୍ରସାଦ ପାଢ଼ୀ (ଚଳଚ୍ଚିତ୍ର) |
| ସଂଯୋଜନା | | ଝିଞ୍ଜିରିକାଟ୍ ସାଂସ୍କୃତିକ ପରିଷଦ |



ଏକ ଜୀର୍ଣ୍ଣଶୀର୍ଣ୍ଣ ପରିତ୍ୟକ୍ତ ଗୃହ । ସାମ୍‌ନାରେ ଏକ ଭଙ୍ଗା ପଥର । ସମୟ ସନ୍ଧ୍ୟା । କୌଣସି ବିକଟ, ବିଶାଳକାୟ ମଣିଷକୁ ଚାରିଜଣ ସାମାନ୍ୟ ନିଶାଗ୍ରସ୍ତ ବ୍ୟକ୍ତି ଟାଣି ନେଉଛନ୍ତି ଏବଂ ପଥରରେ ଜୋର୍‌ରେ ବାନ୍ଧି ଦେବା ପାଇଁ ଚେଷ୍ଟା କରୁଛନ୍ତି । ବିଶାଳକାୟ ମଣିଷଟି ଆବେଗହୀନ, ପ୍ରତିବାଦହୀନ । ବିସ୍ମୟ, କ୍ରୋଧ, ଘୃଣା ଏବଂ ଅଭିମାନର ଯୁଗପତ୍ ମିଶ୍ରଣ ମୁଖମଣ୍ଡଳରେ ସୁସ୍ପଷ୍ଟ । ଦୁଇଜଣ ବ୍ୟକ୍ତି, ରାଜୁ ତ୍ରିପାଠୀ ଓ ପ୍ରଶାନ୍ତ ଦାସ ହୋଇପାରନ୍ତି, ଦଉଡ଼ିର ଅଗ୍ରଭାଗ ହସ୍ତକୁ ଟାଣୁଛନ୍ତି । ଅନ୍ୟ ଦୁଇଜଣ ବନ୍ଦୀକୁ ଏକାଗ୍ର ଚିତ୍ତରେ ଗୁହ୍ଣିଛନ୍ତି । ଷ୍ଟେଜ୍ ମଝିରେ ପ୍ଲାଟଫର୍ମଟିଏ । ଲୋକଟି ସଂଳାପ ମଝିରେ ବସି-ଯାଇଛି ପୁଣି ଶୋଇଯାଇଛି । କେତୋଟି ଆସନର ବ୍ୟବସ୍ଥା କରାଯାଇପାରେ । ରାଜୁ ତ୍ରିପାଠୀ ଅଧିକ ନିଶାଗ୍ରସ୍ତ । କ୍ଳାନ୍ତ ମୁଖରେ ଏକ ପ୍ରକାର ତାଚ୍ଛଲ୍ୟ ହସ ଲାଗି ରହିଛି । ପ୍ରଶାନ୍ତ ଆଭିଜାତ୍ୟସମ୍ପନ୍ନ, ଧନିକ ଯୁବକ । ଅଳ୍ପ ସଚେତନ । ରାଜୁ ବନ୍ଦୀର ଚାରିପଟେ ପ୍ରଦକ୍ଷିଣ କରି ଏକ ସିଗାରେଟ୍ ବନ୍ଦୀ ମୁହଁରେ ଲଗାଉଛି । ଦିଆସିଲି ଜଳାଇବା ସମୟରେ—

ରାଜୁ : ଆପଣ ?

(ବନ୍ଦୀ ନିର୍ବିକାର । ରାଜୁ ନିରୀକ୍ଷଣ କରୁଛି, ହଠାତ୍ ଚିତ୍କାର କରୁଛି, ଯେପରିକି ସେ ଚରମ ସତ୍ୟକୁ ଆବିଷ୍କାର କରି-ପାରିଛି)

ରାଜୁ : ଆପଣ ବୋଧେ ଗ୍ରୀକ୍ ମହାକାବ୍ୟର ପ୍ରମିଥିୟସ୍ ଯେ ମାନବ ସଭ୍ୟତାକୁ ପ୍ରଥମେ ଅଗ୍ନିର ସନ୍ଧାନ ଦେଇଥିଲେ···

ପ୍ରଶାନ୍ତ : ଅଗ୍ନିର ସନ୍ଧାନ ଦେଇଥିଲେ ? ଏ ଦୁଷ୍କର୍ମ କାହିଁକି କଲ ମହାଭାଗ, କାହିଁକି କଲେଏ ମନ୍ଦକର୍ମ ? ଅଗ୍ନି ନ ଥିବା ସମୟରେ ପୃଥିବୀ କେତେ ନିଷ୍ପାପ, କେତେ ସୁନ୍ଦର ଥିଲା ! ଦଳ ଦଳ ଲଙ୍ଗଳ ଲଙ୍ଗୁଳୀ ମଣିଷ, ବାଘ ଭାଲୁ, ହାତୀ ମୃଗ ସହ ବଞ୍ଚୁଥିବେ;

ଫଳ ମୂଳ ଆଣୁଥିବେ, ଝରଣା ଜଳ ପିଉଥିବେ, ଚିନ୍ତା, ଶୋକ, ରୋଗବ୍ୟାଧି ଦୁଃଖ କଷ୍ଟ ବି ନଥିବ, ଅନ୍ତତଃ ଜଣାପାଉ ନଥିବ । ଆଃ, କି ସୁନ୍ଦର । କାହିଁକି ସବୁ ନଷ୍ଟ କରିଦେଲେ ? କାହିଁକି ନଷ୍ଟ କରିଦେଲେ ସେ ଜୀବନ ଧାରା—କାହିଁକି ଅଗ୍ନି ଦେବତାଙ୍କ ସନ୍ଧାନ ନେଲେ ? ଗୋଟିକରୁ ବଢ଼ି ବଢ଼ି କୋଟି କୋଟି ଦେବଦେବୀ ପୃଥିବୀ ବକ୍ଷରେ କେତେ ଆର୍ତ୍ତନାଦ, କେତେ କୋଳାହଳ କରିଛନ୍ତି । ମଣିଷ ଗୁଡ଼ା ବି ବେଶି ବୁଦ୍ଧିଆ, ବେଶୀ ଜ୍ଞାନୀ ହୋଇ କଣ ଯେ ହେଲେଣି--

ଏଣୁ ଆପଣ ନଂ 1 ସ୍କାଉଣ୍ଡ୍ରେଲ୍ । ମୁଁ ଆପଣଙ୍କ ବିରୁଦ୍ଧରେ Indian Penal Code ର 425 ଦଫା mischief ରେ କେଶ୍ ପେଶ୍ କରୁଛି ।

ରଜୁ : (ନିଶ୍ୱାସଣ କରୁଛି) ନା ସେ ସକ୍ରେଟିସ୍ । ମାନବ ସମାଜକୁ ଦିବ୍ୟଜ୍ଞାନ ପ୍ରଦାନ କରିଥିଲେ । ପରିଣାମ ସ୍ୱରୂପ ଉପଯୁକ୍ତ ଅଭ୍ୟର୍ଥନା ପାଇଲେ । ବିଷପାନ କରିବା ପାଇଁ ତାଙ୍କୁ ବାଧ୍ୟ କରାଯାଇଥିଲା । ତାଙ୍କର ଜ୍ଞାନ ପିପାସା ଏତେ ପ୍ରବଳ ଯେ ସେ ଭୂତ ହୋଇ ସାରା ପୃଥିବୀ ପରିକ୍ରମା କରି ବୁଲୁଛନ୍ତି ଜ୍ଞାନ ବିଜ୍ଞାନର ଉତ୍କର୍ଷ ନିମନ୍ତେ । ଦୈବାତ୍ ଆମ ହାବୁଡ଼ରେ ପଡ଼ିଗଲେ ସିନା—ନଚେତ୍ ସମସ୍ତଙ୍କୁ ତ ଆହ୍ଵରି ହଇରାଣ କରିଥାନ୍ତେ ।

ପ୍ରଶାନ୍ତ : ଓଃ ସକ୍ରେଟିସ୍ ସାହେବ, ଫୁଟ୍ବଲ୍ ପ୍ଲେୟାର୍, ନମସ୍କାର—ନମସ୍କାର । ବହୁତ ଧନ୍ୟବାଦ, ସକ୍ରେଟିସ୍ ସାହେବ, ବହୁତ ଧନ୍ୟବାଦ—କି ସୁନ୍ଦର ଫୁଟ୍ବଲ୍ ଖେଳନ୍ତି ଆପଣ ! ମୁଁ ଆପଣଙ୍କ ପରମ ଭକ୍ତ—Greatest fan । ଆପଣଙ୍କ ସହ ପେଲେ, ମାରାଡୋନା, ପ୍ଲାଟିନି କେବେ ସମସ୍କନ୍ଧ ନୁହନ୍ତି । କଦାପି ହୋଇ ପାରିବେ ନାହିଁ । ଫ୍ରାନସ୍ ବିରୁଦ୍ଧରେ କି ମୁସ୍କିଲ୍ ଖେଳିଲେ ! କି ସୁନ୍ଦର ଫିଲ୍ଡ୍ ଗୋଲ୍ । ଏକା

ବେଳେ ସ୍ୱିଭ ପାଞ୍ଚଟି ଡ଼ିଫେଣ୍ଡରଙ୍କୁ କାଟି କି ଚମତ୍କାର ଗୋଲ୍ କଲେ ! ମାଭେଲସ୍, କଲ୍ଲୁ—ହଠାତ୍ ଏଠିରେ ପହଞ୍ଚିଲେ କିପରି ?

ପ୍ରଶାନ୍ତ : ନା, ସେ ଯେ ଯୀଶୁଖ୍ରୀଷ୍ଟ । ଈଶ୍ୱରଙ୍କ ସନ୍ତାନ । ତାଙ୍କ ପରି ନବାକ୍, ନିଷ୍ଠୁର । ଭଗବାନ ଯୀଶୁଖ୍ରୀଷ୍ଟ ସବୁ ପାପୀମାନଙ୍କୁ ମୁକ୍ତିର ମାର୍ଗ ଦେଖାଇଛନ୍ତି । ପାପୀମାନେ ବି ଭଗବାନ ଯୀଶୁଖ୍ରୀଷ୍ଟଙ୍କୁ ମୁକ୍ତିର ମାର୍ଗ ଦେଖାଇଛନ୍ତି । ତେଣୁ ପୁନରୁତ୍ଥାନ—Resurrection, The Second Coming !

ସଜ୍ଜୁ : ହେ ଭଗବାନ, Resurrection ପରେ ବେଥଲହାମ୍ ନ ଯାଇ ସିଧା ଆମ ପାଖକୁ କାହିଁକି ଚାଲି ଆସିଲେ ? ପ୍ରଶାନ୍ତ ବାବୁ, ଦଉଡ଼ିଯାଅ । ଶୁଣୁଛ କି—ଦଉଡ଼ି ଯା—କ୍ରସ୍ ଗୋଟାଏ ଆଣିବ । ଜଲ୍ଦି ଜଲ୍ଦି ଶୁଣୁଛ କଣ ? ଜଲଦି ଯାଅ, ଭଗବାନ ଯୀଶୁଖ୍ରୀଷ୍ଟ ସବୁ ପାପୀମାନଙ୍କୁ ମୁକ୍ତି ମାର୍ଗ ଦେଖାଇଛନ୍ତି ଯେ, ତେଣୁ ପୁଣି ବିଚାରଣା ହେବ । ହଁ କଣ୍ଟା କଣ୍ଟା ବି ଆଣିଥିବେ, ଆଉ କେତୋଟି ସାକ୍ଷୀ ବି ।

(ପ୍ରଶାନ୍ତର ପ୍ରସ୍ଥାନ)

ତୃତୀୟ ଓ ଚତୁର୍ଥ ଯୁବକ, ଅଜୟ, ମହାନ୍ତି ଓ ପ୍ରକାଶ ନାୟକ ବନ୍ଦୀର ବନ୍ଧନ ପାଶ୍ୱ'କୁ ତନ୍ନ ତନ୍ନ ନିରୀକ୍ଷଣ କରିଛନ୍ତି । ଅଜୟ ମହାନ୍ତି ଚିନ୍ତାମଗ୍ନ, ମାର୍ଜିତ ରୁଚିସମ୍ପନ୍ନ, ପ୍ରକାଶ ଶାନ୍ତ, ଭଦ୍ର, ଉଦାର ।

ଅଜୟ : ନା, ଏ ପରି ଗୌତମ ବୁଦ୍ଧ ! ସିଏ ବା କେତେ ତପସ୍ୟା କରିଛନ୍ତି । କେତେ ବ୍ରତ ସାଧନା, ଉପବାସ ପାଳନ କରିଛନ୍ତି ମାନବ ଜାତିର ମୁକ୍ତି ନିମନ୍ତେ । ସୁନ୍ଦରୀ ସ୍ତ୍ରୀ ଯଶୋଧାରା, ଶିଶୁ ପୁତ୍ର ରାହୁଲକୁ ସମ୍ପୂର୍ଣ୍ଣ ତ୍ୟାଗ କରିଛନ୍ତି । କୌଣସି ମୋହ ମାୟାର ବନ୍ଧନ ତାଙ୍କୁ ଟାଣି ରଖିପାରି ନାହିଁ । ଯଶୋଧାରାଙ୍କ

ସୁକୁମାରୀ ପ୍ରାଣ, ବ୍ୟର୍ଥ ନାରୀତ୍ୱ ତିଳ ତିଳ ଦଗ୍ଧ ହୋଇଛନ୍ତି । ରାହୁଲ ପିତୃଶୂନ୍ୟ ହୋଇ ଯାଇଛି । କିନ୍ତୁ ସିଦ୍ଧାର୍ଥ ପଛକୁ ଫେରି ଚାହିଁନାହାନ୍ତି । ବିରାଟ ମାନବ ଜାତିର ମୁକ୍ତି ନିମନ୍ତେ, ପରିତ୍ରାଣ ନିମନ୍ତେ ତପଶ୍ଚର୍ଯ୍ୟା କରିଛନ୍ତି ନିରଞ୍ଜନା ନଦୀ ତଟେ, ବୋଧିଦ୍ରୁମ ତଳେ ସେ ହଠାତ୍ ଦିବ୍ୟଜ୍ଞାନ ଲାଭ କରିଛନ୍ତି । ତୁମେ ମହାନ ଗୌତମ ଜୀ, ତୁମେ ମହାନ୍ । ଆମର ଠାକୁର ମାନଙ୍କୁ, ସ୍ୱାର୍ଥାନ୍ୱେଷୀ ତସ୍କରମାନଙ୍କୁ ତୁମ ମହାନ୍ ମନ୍ତ୍ର ଶିକ୍ଷା ଦେବା ଉଚିତ । କିନ୍ତୁ ଏଠାରେ ଆବଶ୍ୟକ କାହିଁକି ? ତୁମେ ଆସିଗଲେ ଏଷ୍ଟାବ୍ଲିଶ୍‌ମେଣ୍ଟ ପୂରା ଭାଙ୍ଗି ଯିବନି ? ଶୀଘ୍ର ଦୌଡିଯାଅ କିମ୍ବା ସମ୍ପୂର୍ଣ୍ଣ ବିପ୍ଳବ ପାଇଁ ଚେଷ୍ଟା କର ।

ପ୍ରକାଶ : ନା, ଏ ମହାତ୍ମା ଗାନ୍ଧୀ । ବିଚରା କେତେ କଷ୍ଟ ସହିଛନ୍ତି, କେତେ ବର୍ଷ ଜେଲ ଭୋଗିଛନ୍ତି । ମାଡ଼ ଖାଇ ହାଡ଼ ଭାଙ୍ଗିଛି । ସତ୍ୟ, ଅହିଂସାର ପ୍ରବର୍ତ୍ତକ ମହାତ୍ମା ଗାନ୍ଧୀ । 'ସତ୍ୟ ହିଁ ଭଗବାନ, ଅହିଂସା ମନ୍ତ୍ର ହିଁ ଶ୍ରେୟସ୍କର' ଏ ବାଣୀରେ ପ୍ରକମ୍ପିତ ହୋଇଅଛି ବିପୁଳ ମେଦିନୀ । ତାଙ୍କର ନେତୃତ୍ୱରେ ହିଁ ଅହିଂସା ଆନ୍ଦୋଳନ ସଫଳ ହୋଇ ଭାରତ ସ୍ୱାଧୀନ ହୋଇପାରିଛି ବ୍ରିଟିଶ୍ ରାଜତ୍ୱରୁ, ଯଦିଓ ଦ୍ୱିଖଣ୍ଡିତ ହୋଇ । ତେଣୁ ସେ ଚରମ ପ୍ରାୟଶ୍ଚିତ୍ତ ଦେଇଛନ୍ତି । ନାଥୁରାମ ଗଡ଼୍‌ସେ ତାଙ୍କୁ ହତ୍ୟା କରିଛି, ଫାୟାର୍ କରିଛି । ବିଚରା ମହାତ୍ମାଜୀ, ଆହା ତୁମେ ଧନ୍ୟ, ତୁମେ ନମସ୍ୟ । ତୁମେ ଯିବା ଚାଲିଯାଇଛ ମହାତ୍ମାଜୀ, ତୁମ ନଶ୍ୱର ଶରୀର ଯିବା ପଂଚ ଭୂତରେ ବିଲୀନ ହୋଇଛି, ହେଲେ ତୁମର ଆଦର୍ଶ ଚିରନ୍ତନ । ଏ ପୃଥିବୀକୁ ସର୍ବଦା ଆଲୋକ ପ୍ରଦାନ କରି ଆସୁଛି । ତୁମର ମହାନ୍ ବ୍ୟକ୍ତିତ୍ୱ, ମହାନ ଆଦର୍ଶ ହେତୁ ଭାରତ ଆଜି ରାମରାଜ୍ୟରେ ପରିଣତ ହୋଇପାରିଛି ମହାତ୍ମାଜୀ, ଭାରତ ଆଜି ରାମରାଜ୍ୟରେ ପରିଣତ ହୋଇ ପାରିଛି । (କାନ୍ଦି ପକାଇଛି)

ରାଜୁ : କାନ୍ଦୁଛ କ'ଣ ମ ! ଭଦ୍ରବ୍ୟକ୍ତି କଣ ଭାବିବେ ? ଆଚ୍ଛା ମଞ୍ଜୁଷା — ମଞ୍ଜୁଷା ଡ଼ାକିଦେଲ କଷ୍ଟ ମାଇଣ୍ଡ କଲେ କି ? ଏଁ କହିବେନି, ଆପଣ କିଏ, ଏଠାକୁ କାହିଁକି ଆସିଛନ୍ତି—ଏ ପ୍ରକାଶଟି ଅପଦାର୍ଥ, ବିଲ୍‌କୁଲ୍ ଅପଦାର୍ଥ. ତାଙ୍କୁ ଟିକେ କ୍ଷମା କରି ଦିଅନ୍ତୁନା । ଆପଣଙ୍କୁ ମହାତ୍ମା ଗାନ୍ଧୀ କହି ବଡ଼ ଅପରାଧ କରିଛୁ । ନେପୋଲିଅନ୍, ମାଓସେତୁଂ କିମ୍ବା ହିଟ୍‌ଲର ନ ହୋଇ ଗାନ୍ଧୀଙ୍କର ମୁଖା କାହିଁକି ଧାରଣ କରିବେ ? କଣ ବା ଫାଇଦା ?

ଅଜୟ : ନା, ନା, ଏ ହେଉଛନ୍ତି ଶ୍ରୀ ରାମଚନ୍ଦ୍ର । ସୀତା ପାତାଳଗାମୀ ହେବାପରେ ଝୁରି ଝୁରି ବୁଲୁଛନ୍ତି । କେତେ କ୍ରନ୍ଦନ କରୁଛନ୍ତି, ହିମ୍ବୁରି—

ରାଜୁ : ଶ୍ରୀ ରାମଚନ୍ଦ୍ର ।

ଅଜୟ : ଶ୍ରୀ ଶ୍ରୀ ଶ୍ରୀ ରାମଚନ୍ଦ୍ର । ପ୍ରଣାମ ପ୍ରଣାମ । କି ମହାଭାଗ୍ୟ, ସାକ୍ଷାତ ଭଗବାନଙ୍କୁ ଦର୍ଶନ କରିପାରିଲୁ । ହେ ଭଗବାନ୍, ଯାହାଙ୍କୁ ଦେଖିବା ପାଇଁ ମୁନି ଋଷିଗଣ ଶହ ଶହ ବର୍ଷ ତପସ୍ୟା କରିଛନ୍ତି, ଯେ କି ଅହଲ୍ୟାର ସ୍ତୁତି ଶୁଣିଥିଲେ, ସୁନା ମୃଗ ପଛରେ ଦୌଡ଼ିଥିଲେ, ବାଳିକୁ ଅକାରଣରେ ହତ୍ୟା କରିଥିଲେ, ସୁଗ୍ରୀବର ମିତ୍ର ହୋଇଥିଲେ, ମହା ପରାକ୍ରମୀ ରାବଣଙ୍କୁ ବିନାଶ କରିଥିଲେ, ଆଉ କଣ କରିଥିଲେ ସେ—ହଁ, ରଜକ କଥା ଶୁଣି ସୀତାଙ୍କୁ ବଣକୁ ପଠାଇଥିଲେ, ଅସୁରଙ୍କୁ ହତ୍ୟା କରିଥିଲେ । ହେ ଭଗବାନ, ବେଶି କିଛି ମନେ ପଡ଼ୁନି, କ୍ଷମା କରିବେ—ହେ ଭଗବାନ, ଆପଣଙ୍କ ସୁନ୍ଦର ପୃଥିବୀ ବକ୍ଷରେ ଅନେକ କୁତ୍ସାରଟନା କରୁଛନ୍ତି । ପ୍ରେମ, ଦୟା, କରୁଣା, ସୌନ୍ଦର୍ଯ୍ୟ, ଧର୍ମଭାବ ସହ ପାପ, ବ୍ୟଭିଚାର, ଦୁଷ୍କର୍ମ ଅତ୍ୟାଚାର, ଦୁର୍ନୀତି, ଅନ୍ୟାୟ ମିଶି ରହିଛି । ସୁନ୍ଦର ମିଶ୍ରଣ ହୋଇଛି । ଏ ସମାଜ, ପୃଥିବୀ କପରି ବୁଲୁ ରହିଛି, ଏଯାଏଁ

ବନ୍ଧୁ ପୂକର । ଭଗବାନ, ଏ ପୃଥିବୀ ଉପର ଧ୍ୱଂସ ପାଇବାକୁ ଏ ଯାବତ୍, ତାହାକୁ ସବୁଠାରୁ ବଡ଼ ପୂକର । ସବୁ ମାୟା ଭଗବାନ୍, ସବୁ ତୁମର ମାୟା ।

ରାଜ୍‌ ଧେତ୍, ସେ ତବ ଶ୍ରୀକୃଷ୍ଣ ।
ଗୋପୀ ହୃଦବଲ୍ଲଭ, ନନ୍ଦନନ୍ଦନ, ନୟନାଭିରାମ ଶ୍ରୀକୃଷ୍ଣ । ନମସ୍ତେ, ନମସ୍ତେ । ହେ ପ୍ରଭୁ, ଆପଣଙ୍କ କୀର୍ତ୍ତି, ଗାଥା ଅତୁଳନୀୟ । ଆପଣଙ୍କୁ ପ୍ରତ୍ୟକ୍ଷରେ ଦେଖିପାରିଲୁ— ସ୍ୱଦେହରେ ସ୍ୱର୍ଗ ପ୍ରାପ୍ତି ତ ନିଶ୍ଚୟ ! ହେ ଭଗବାନ, ଆପଣ ମହାନ୍ । ଶାନ୍ତିକାମୀ, ଯୋଗେଶ୍ୱର, ଭକ୍ତବତ୍ସଳ, ଶରଣ ପଞ୍ଜର, ଅପ୍ରତିଦ୍ୱନ୍ଦୀ, ଅଦିତୀୟ, ଅମର । କିନ୍ତୁ ଭଗବାନ୍, ଏ ବିଂଶ ଶତାବ୍ଦୀର ଘୋର କଳିକାଳ ମଧ୍ୟରେ ଆପଣଙ୍କ ପୁଣି ଆବିର୍ଭାବ କାହିଁକି ? ଦୟାକରି ଉତ୍ତର ଦିଅନ୍ତୁ । ଆପଣ କେଉଁ ଉଦ୍ଦେଶ୍ୟ ରଖି ପୃଥିବୀକୁ ଆସିଛନ୍ତି, ଶୀଘ୍ର ଘୋଷଣା କରି ଦିଅନ୍ତୁ । ଆମେ ଯଦି ଆପଣଙ୍କୁ ବାନ୍ଧି ଆଣି ନଥାନ୍ତୁ, ଲକ୍ଷ ଲକ୍ଷ ଅନୁଢ଼ା ଯୁବତୀଙ୍କ ମତିଭ୍ରମ ହୁଅନ୍ତା ନାହିଁ ? ଆପଣଙ୍କ ବଂଶୀ ସ୍ୱନ ଶୁଣିବା ପାଇଁ ଆବାଳ-ବୃଦ୍ଧବନିତା ଆପଣଙ୍କୁ ଘେରାଉ କରି ନଥାନ୍ତେ ? ଲାଠି ଗୁଳି, ଫାୟାରିଙ୍ଗ୍ ସବୁ ହୋଇଥାନ୍ତା, ଶାସନକଳ ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଥାନ୍ତା ।

ପ୍ରକାଶ : ଫାୟାରିଙ୍ଗ୍ ହୋଇଥାନ୍ତା—

ରାଜ୍‌ ଅପଣ ଶୀଘ୍ର ଚାଲିଯାଆନ୍ତୁ ପ୍ରଭୁ । ଅପଣଙ୍କ ପରି ମହାନ୍ କୂଟନୀତିଜ୍ଞଙ୍କ ସ୍ଥାନ ନାହିଁ ପୃଥିବୀ ବକ୍ଷରେ । ଆତ୍ମଗୋପନ କିମ୍ବା ଅଜ୍ଞାତବାସ କରନ୍ତୁ ସଶସ୍ତ୍ର ପୋଲିସ ବନ୍ଦୋବସ୍ତରେ । ନଚେତ୍ ପୃଥିବୀର ମହାନ୍ ରାଷ୍ଟ୍ରନୀତିଜ୍ଞମାନେ ଶାନ୍ତିରେ ରହିପାରିବେ ? ଏଇନା ଉନ୍ନତ ରାଷ୍ଟ୍ରର ସୁସଭ୍ୟ ସରକାର-ଗଣ ଅପଣଙ୍କୁ ହତ୍ୟା କରିବା ପାଇଁ **Assassins' Squad, Mercenaries** ନିଶ୍ଚୟ ପଠାଇ ଦେବେ । ଆପଣଙ୍କ

ମୁଣ୍ଡ ପାଇଁ ଦଶ କୋଟି ଡଲାର ପୁରସ୍କାର ଘୋଷଣା କରିବେ ।

ପ୍ରକାଶ : ଅରେ ସୁବର୍ଣ୍ଣ ସୁଯୋଗ । ଆମେ ସେ ପୁରସ୍କାର ପାଇପିବା ଯେ, ହେ ଭଗବାନ୍, ଆପଣଙ୍କ ବିରୁଦ୍ଧରେ ଗୁଡ଼ାଏ ଗୁରୁତର ଅଭିଯୋଗ । Nonbailable offence, ଅକାଟ୍ୟ ପ୍ରମାଣ ବି ଭରପୂର ଅଛି ।

ଆପଣ ଶତସହସ୍ର ଅପ୍ରାପ୍ତ ବୟସ୍କା ଗୋପୀମାନଙ୍କୁ ବଂଶୀ ବାଦନ ଦ୍ୱାରା ମନ୍ତ୍ରମୁଗ୍ଧ କରି ଅପହରଣ କରିଛନ୍ତି ମନ୍ଦ ଉଦ୍ଦେଶ୍ୟରେ ଏବଂ ସେମାନଙ୍କ ସହ ଅବୈଧ ଯୌନ ସଂପର୍କ ସ୍ଥାପନ କରିଛନ୍ତି । Rape, Punishable u/s 375 I. P. C.

ଆପଣ ଅସଂଖ୍ୟ ନିରୀହ ବ୍ୟକ୍ତିଙ୍କୁ ବଧିବାର ଯୋଜନା କରି ନିର୍ମମ ହତ୍ୟା କରିଛନ୍ତି । Murder, Punishable U/S 302 I. P C. You are a habitual offender, hardened criminal.

ଅଜୟ : ଏଁ ଭଗବାନଙ୍କ ବିରୁଦ୍ଧରେ I. P. C.

(ଦର୍ଶକଙ୍କ ପ୍ରତି) ବନ୍ଧୁଗଣ, ଭଗବାନ ଲକ୍ଷ ଲକ୍ଷ ବର୍ଷ ଧରି ଅଛନ୍ତି ।

ପ୍ରକାଶ : କେଉଁଠି ଅଛନ୍ତି ?

ଅଜୟ : ତୁମେ ଜାଣ ନା ?

ପ୍ରକାଶ : ଯେପରିକି ତୁମେ ଜାଣି ଦେଇଛ ।

ଅଜୟ : ବନ୍ଧୁଗଣ, ଆପଣମାନେ ଜାଣନ୍ତି, ଭଗବାନ ହିଁ ହେଉଛନ୍ତି ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା ଏବଂ ସଂହାରକର୍ତ୍ତା । ସର୍ବବ୍ୟାପୀ, ସର୍ବଶକ୍ତିମାନ୍ ଏବଂ ସର୍ବଦର୍ଶୀ । ସେ ମହାନ୍ । ଭଗବାନଙ୍କ ବ୍ୟତିରେକେ ଆମେ ସବୁ ତିଷ୍ଠିବା ଅସମ୍ଭବ । ଏପରିକି ମୁହୂର୍ତ୍ତେ ବି ବଞ୍ଚିବା ଅସମ୍ଭବ । ପବନ, ପାଣି, ଆଲୁଅ

ଷଡ଼ଯନ୍ତ୍ରରେ ମଣିଷ ବନ୍ଧା ଯାଇପାରେ । କିନ୍ତୁ ଭଗବାନଙ୍କୁ ବ୍ୟକ୍ତିଗତ ବାନ୍ଧିପାରିବ କି ? କାରଣ ସେ ତ ବିଶ୍ୱପ୍ରାଣ, ସୃଷ୍ଟି ନିୟନ୍ତା, ଅନାଦି ଅନନ୍ତ । କିନ୍ତୁ ଭାରତୀୟ ପିଙ୍ଗଳ ଧାରା ମାନେ Indian Penal Code ମାତ୍ର ଏକଶହ ତିରିଶ ବର୍ଷ ପୂର୍ବେ ପ୍ରଣୀତ ହୋଇଛି । ଏଣୁ I. P. C ର କୌଣସି ଧାରା ଭଗବାନଙ୍କ ପାଇଁ applicable ହେବକି ? ବରଂ ଭଗବାନଙ୍କ ସମସ୍ତ ବାଣୀ I. P. C. କାହିଁକି ଆଧୁନିକ ସଭ୍ୟତା ପାଇଁ ନିଶ୍ଚିତ ପ୍ରଯୁଜ୍ୟ—ନା କଣ କହୁଛନ୍ତି ?

ପ୍ରକାଶ : କିନ୍ତୁ ବନ୍ଧୁଗଣ, ଆପଣମାନେ ସ୍ୱୀକାର କରନ୍ତୁ, ଭଗବାନ୍ ପୁଣି ମଣିଷର ରୂପରେ ୧୯୮୯ ଖ୍ରୀଷ୍ଟାବ୍ଦରେ କୌଣସି ଅନ୍ଧପ୍ରାନ୍ତରେ, ସ୍ଥାନ ଚଦାନ୍ତ ବି ହୋଇପାରେ, ଭାରତକୁ ଆସି ଧରାପଡନ୍ତି । ସେ ଗୁପ୍ତଚର ବି ହୋଇପାରନ୍ତି, ତାଙ୍କ ପାଇଁ I. P. C. ର ପ୍ରତ୍ୟେକ ଧାରା ନିଶ୍ଚୟ ପ୍ରଯୁଜ୍ୟ ।

ସଙ୍ଗ୍ : ଚୁପ୍ I. P. C. ଏବଂ ଭଗବାନ୍—
କ୍ଷମା ମାଗ, ପଦାରବିନ୍ଦରେ କ୍ଷମା ମାଗ ।

(ଏକ ଶକ୍ତ ଧକ୍କା ଦେଇଛି, ପ୍ରଶାନ୍ତ ଭୂମିରେ ନିପତିତ ସମସ୍ତେ ନତମସ୍ତକ ହୋଇ କ୍ଷମା ମାଗିଛନ୍ତି ।)

ଆମକୁ କ୍ଷମାକର ଭଗବାନ୍,
ଆମେ ସବୁ ପାପୀ, ହତ୍ୟାକାରୀ ପ୍ରବଞ୍ଚକ ।
ଆମେ ସବୁ ହତ୍ୟାକାରୀ, ପ୍ରବଞ୍ଚକ, ପାପୀ ।
ଆମେ ସବୁ ପ୍ରବଞ୍ଚକ, ପାପୀ, ହତ୍ୟାକାରୀ ।

ପ୍ରକାଶ : ତଥାପି ତୁମର ସନ୍ତାନ ତ, ରକ୍ଷା କରିଦିଅ । ଷଡ଼ କଣ ? ଜାନାମି ଧର୍ମଂ ନ ଚ ମେ ପ୍ରବୃତ୍ତି, ଜାନାମ୍ୟଧର୍ମଂ ନଚ ମେ ନିବୃତ୍ତି ତ୍ୱୟା ହୃଷୀକେଶ ହୃଦିସ୍ଥିତେନ, ଯଥା ନିଯୁକ୍ତୋସ୍ମି, ତଥା କରୋମି ।

(ସଙ୍ଗ ସହ ପ୍ରଶାନ୍ତର ପ୍ରବେଶ)

ପ୍ରଶାନ୍ତ : ହେ, ଭଗବାନ ଗଲେ କୁଆଡ଼େ—

ରାଜ  : ଆରେ ହେ, ଭଗବାନ ଅନ୍ତର୍ଦ୍ଧାନ ହୋଇଗଲେ !

ପ୍ରକାଶ : ଯୋଉ ମଦୁଆଟାକୁ ଭଉ ଭଉ ଆଣିଥିଲେ । ସେ ଉକାପୁତ କମ୍ବା ରେମ୍ବର ବ ହୋଇପାରେ । ଏ ଗଂଜୋଡ଼, ଡ୍ରଗ୍ ଆଡିକ୍ଟଗୁଡ଼ାକ ତାଙ୍କୁ ଭଗବାନ ମନେ କରିଥିଲେ । ସନ୍ଦେହିପ୍, ଯୀଶୁଖ୍ରୀଷ୍ଟ କହିଦେଲେ ।

ଅଜୟ : କିନ୍ତୁ ସେ କଣ ସତରେ ମଦ୍ୟପ ଗଂଜୋଡ଼ ? ନା ଆମେ ସବୁ ମଦ୍ୟପ, ଡ୍ରଗ୍ ଆଡିକ୍ଟ । ଏ ଦୁନିଆଟା ସାରା ମଟୁଆଲ, ପାଗଳ, କିବେକଶୂନ୍ୟ ପ୍ରତି ମୁହୂର୍ତ୍ତରେ କେତେ ସହସ୍ର ମଣିଷ ପୋକ ମାଛି ପରି ମରୁଛନ୍ତି ବିନା ଦୋଷରେ । ଏ ପଗଳାମିର କଣ ଅନ୍ତ ନାହିଁ ? ଏମିତି ବଞ୍ଚିବାରେ କଣ ବା ଅର୍ଥ ଅଛି ? ଯେତେବେଳେ ମଣିଷ ମରି ନାହିଁ ସେତେବେଳେ ବଞ୍ଚିବା ପାଇଁ ବାଧ୍ୟ, ଉଦ୍ଦେଶ୍ୟହୀନ ଭାବେ, ଅନିଚ୍ଛାକୃତ ଭାବେ ।

ରାଜ  : କିନ୍ତୁ ସେ ଭଦ୍ରବ୍ୟକ୍ତି କଣ ସତରେ ଭଗବାନ୍ ।

ପ୍ରଶାନ୍ତ : କେଉଁ ଭଦ୍ର ବ୍ୟକ୍ତି ?

ଅଜୟ : ଯାହାକୁ ଆପଣ ବାନ୍ଧି ଆଣିଥିଲେ··· •

ରାଜ  : ହଁ ଯାହାକୁ ଆମେ ବାନ୍ଧି ଆଣିଥିଲେ ।

ପ୍ରଶାନ୍ତ : ଆମେ କଣ ଗୋଟିଏ ମଣିଷକୁ ଆଣିଥିଲେ ?

ଅଜୟ : ଆଉ କଣ ଗୋଟିଏ ବଳଦ କମ୍ବା ଗୋଟିଏ କୁକୁରକୁ ବାନ୍ଧି ଆଣିଥିଲେ ?

ପ୍ରଶାନ୍ତ : ନା ଏକ ସୁନା ଚଢ଼େଇକୁ ବାନ୍ଧି ଆଣିଥିଲେ ।

ରାଜ  : ଚୁପ୍, ସୁନା ଚଢ଼େଇକୁ ବାନ୍ଧି ଆଣିଥିଲେ । ଆମେ ଏକ ସୁନା ହରିଣକୁ ବାନ୍ଧି ଆଣିଥିଲେ ।

ଅଜୟ : ନା, ଏକ ରାମ ଶିଆଳକୁ ବାନ୍ଧି ଆଣିଥିଲେ ।

ପ୍ରଶାନ୍ତ : କୁକୁଡ଼ା କି ମାଙ୍କଡ଼ ହୋଇଥାଇପାରେ ।

ପ୍ରକାଶ : ସୁନ୍ଦର ତରୁଣୀ ବି ହୋଇଥାଇପାରେ—

ରାଜୁ : ଠିକ୍ ଠିକ୍ ଦ୍ରୌପଦୀ କିମ୍ବା ମନ୍ଦୋଦରୀଙ୍କୁ ଆମେ ବରଣମାଳା ଦେଇ ଆଣିଥିଲେ ସ୍ୱୟମ୍ବର ସଭାରୁ ।

ଅଜୟ : ନା ଛେଳି, ଛେଳିର ଦୁଇଟି ବଙ୍କା ଶିଙ୍ଗ ଥାଏ ।

ରାଜୁ : ନା ନା ଦ୍ରୌପଦୀ

ପ୍ରକାଶ : ମୃଗ, ସୁନାମୃଗ ହୋଇପାରେ

ରାଜୁ : ଦ୍ରୌପଦୀ, ଅଲବତ୍ ଦ୍ରୌପଦୀ

ପ୍ରଶାନ୍ତ : କିନ୍ତୁ ଆମେ ଯେ ଚାରିଜଣ, ଦ୍ରୌପଦୀ ବୋଧେ ପାଞ୍ଚଜଣଙ୍କୁ ବାହା ହୋଇଥିଲେ ।

ଅଜୟ : ଛେଳି କିନ୍ତୁ ଏକ ସୁନ୍ଦର ପଶୁ

ରାଜୁ : ଦ୍ୱାପର ଯୁଗରେ ଦ୍ରୌପଦୀ ପାଞ୍ଚପୁତ୍ର ଏବଂ ଛ' ଜଣଙ୍କ ପ୍ରତି ଆସକ୍ତ ଥିଲେ ।

ଅଜୟ : କିନ୍ତୁ ସେ ଦ୍ରୌପଦୀ ନା ଭଦ୍ରବ୍ୟକ୍ତି ନା ମନ୍ଦୋଦରୀ, କୁଆଡ଼େ ଗଲେ ?

ପ୍ରଶାନ୍ତ : ଦ୍ରୌପଦୀଙ୍କୁ ପରା ଆମେ ଦଉଡ଼ିରେ ବାନ୍ଧି ରଖିଥିଲେ ।

ପ୍ରକାଶ : କିନ୍ତୁ ତାଙ୍କର ଦୋଷ କଣ ?

ରାଜୁ : ଯେହେତୁ ପଞ୍ଚବୀରଙ୍କ ସ୍ତ୍ରୀ ହୋଇ, ସେ କର୍ଣ୍ଣଙ୍କ ପ୍ରତି ଆସକ୍ତ ଥିଲେ ।

ଅଜୟ : ଏବଂ ଦୁର୍ଯ୍ୟୋଧନଙ୍କ ପ୍ରତି ଆସକ୍ତ ନ ଥିଲେ ।

ପ୍ରଶାନ୍ତ : ଶ୍ରୀକୃଷ୍ଣଙ୍କ ପ୍ରତି—

ଅଜୟ : ସାରା ସଂସାର ତ ଆସକ୍ତ—

ପ୍ରକାଶ : ଆମେ ସବୁ ରାମାୟଣ, ମହାଭାରତ, ପୁରାଣ ଧର୍ମଗ୍ରନ୍ଥର ମୂଳତତ୍ତ୍ୱ ନ ବୁଝି ସବୁ ବିକୃତ କରିବା ପାଇଁ ଦୃଢ଼ ପରିକର ।

ବୋଧେ ଆମେ ସବୁ ଏ ମହାନ୍ ଧର୍ମଗ୍ରନ୍ଥ ପଢ଼ିବା କମ୍ବା ଶୁଣିବା ପାଇଁ ଦରକାର ନୋହୁ । କଛି ନ ବୁଝି ମନ ଇଚ୍ଛା ପ୍ରଗଳ୍‌ଭ ଭାଷଣ ଦେବା ଆମର ଅଭ୍ୟାସ । ଗଣତନ୍ତ୍ର ରାଷ୍ଟ୍ରରେ ସର୍ବସାଧାରଣଙ୍କର ବାକ୍ ସ୍ୱାଧୀନତା ଅଛି, ଏଥିରେ ଦ୍ୱିରୁକ୍ତିର ଅବକାଶ ନାହିଁ । କିନ୍ତୁ ସମସ୍ତ ବିଷୟ କଦର୍ଥ କରିବା ଅଭ୍ୟାସକୁ ପରିତ୍ୟାଗ କରିବା ସର୍ବାଦୌ ପ୍ରୟୋଜନୀୟ ।

ରାଜୁ : କିନ୍ତୁ ସେ ଦ୍ରୌପଦୀ କୁଆଡ଼େ ଗଲେ ?

ପ୍ରକାଶ : ସେ ଦ୍ରୌପଦୀ ନ ହୋଇ ହନୁମାନ ବି ହୋଇଥାଇ ପାରନ୍ତି ।

ରାଜୁ : ନା ଦ୍ରୌପଦୀ

ଅଜୟ : ସେ ଦୌଡ଼ି ଗଲାବେଳେ ପାଦ ଅନ୍ଧାରରେ ଝୁଣ୍ଟି ପଡ଼ିଥାଆନ୍ତି ।

ପ୍ରଶାନ୍ତ : କିମ୍ବା ଅନ୍ଧ କୂପରେ ଗଳି ଯାଇ ଥାଆନ୍ତି ।

ରାଜୁ : ଆମେ ତାଙ୍କୁ ସସମ୍ମାନେ ବିଦାୟ ଦେବା । ତାଙ୍କ ଚିତାଗ୍ନିରେ ସମସ୍ତେ ଝାସ ଦେବା ।

ପ୍ରକାଶ : ତଦ୍ଦ୍ୱାରା ଆମେ ସମସ୍ତେ ସତୀ ହୋଇଯିବା । ଉତ୍ତର ପୁରୁଷଗଣ ଏକ ରମଣୀୟ ମନ୍ଦିର ସ୍ଥାପନ କରିବେ ଯେଉଁଠି ଆମର ଚିତାଗ୍ନି ଜଳି ଯାଇଥିବ । ଆମର ଚିତାଭସ୍ମ ଏରୋପ୍ଲେନ୍‌ରେ ନେଇ ସବୁ ନଦ, ନଦୀ, ଗିରି କନ୍ଦର, ସହର, ଗ୍ରାମ, ତରୁ ଲତା, ଗୁଳ୍ମ, ତୃଣ ପ୍ରାନ୍ତର ସବୁଠାରେ ଫିଙ୍ଗି ଦେବେ । ତଦ୍ଦ୍ୱାରା ସେ ସବୁ ଜୀବନ୍ତ ହୋଇ ଉଠିବ । ପ୍ରାଣ ପ୍ରାଚୁର୍ଯ୍ୟରେ ଆହ୍ଲାଦିତ ହୋଇଯିବ ।

ପ୍ରଶାନ୍ତ : କିନ୍ତୁ କେଉଁ ଦ୍ରୌପଦୀ ?

ଅଜୟ : ଦ୍ରୁପଦ ନନ୍ଦିନୀ ଦ୍ରୌପଦୀ ଧୃଷ୍ଟଦ୍ୟୁମ୍ନ ଭଗ୍ନୀ ।

ପ୍ରଶାନ୍ତ : ଆମର ସଂପର୍କ ?

ଅଜୟ : ହଁ, ଆମର କଣ ସଂପର୍କ ଦ୍ରୌପଦୀ ସହ ?

ପ୍ରଶାନ୍ତ : ଆମରି ସଂପର୍କ ସେ ଲୋକ ସହ, ଯାହାକୁ ଆମେ ହୃଦୟରେ ବାନ୍ଧି ରଖିଥିଲେ ।

ପ୍ରକାଶ : କିନ୍ତୁ ତା ସହ କଣ ସଂପର୍କ ?

ବିଜୁ : ମୁଁ ଜାଣେନା—

ଅଜୟ : ମୁଁ ଜାଣେନା—

ପ୍ରଶାନ୍ତ : ମୁଁ ବି ଜାଣେନା—

ପ୍ରକାଶ : ତେବେ ଆମେ କଣ ଦ୍ରୌପଦୀ ନାମଧେୟ ମରିଚୀକା ପଛେ ଏ ଯାଏଁ ଦୌଡ଼ୁଥିଲେ ?

ଅଜୟ : ସେ ଭଦ୍ରବ୍ୟକ୍ତି ବୋଧେ ଆମର ଶତ୍ରୁ । ଯେପରି ପାକିସ୍ଥାନ ଆମର ଶତ୍ରୁ ।

ପ୍ରଶାନ୍ତ : ନା ଯେପରି ପାକିସ୍ଥାନୀଗଣ ଆମର ଶତ୍ରୁ ।

ପ୍ରକାଶ : କିନ୍ତୁ ପାକିସ୍ଥାନୀଗଣ କାହିଁକି ଭାରତୀୟମାନଙ୍କ ଶତ୍ରୁ ?

ପ୍ରଶାନ୍ତ : ପାକିସ୍ଥାନର ଆବିର୍ଭାବ କାଳରୁ ଭାରତ ସହ ତାର ସୀମା ବିବାଦ ଲାଗି ରହିଛି । କାଶ୍ମୀର ପ୍ରଶ୍ନ ଧର୍ମଗତ, ସଂପ୍ରଦାୟ ଗତ । ବିଦ୍ୱେଷ, କନ୍ଦଳର ପରିସମାପ୍ତି ନାହିଁ । ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତିରେ ବି କାହାରି ବିଶ୍ବାସ ନାହିଁ, ବିଶେଷତଃ ପାକିସ୍ଥାନର ।

ପ୍ରକାଶ : କିନ୍ତୁ ପାକିସ୍ଥାନୀଗଣ କାହିଁକି ଭାରତୀୟମାନଙ୍କ ଶତ୍ରୁ ? ଯାହା କିଛି ମତଭେଦ, ଆପୋଷ ଆଲୋଚନାରେ ସମାଧାନ ହୋଇ ପାରନ୍ତା ନାହିଁ ?

ଅଜୟ : କନ ଫୁସିଅସ୍ କହିଥିଲେ
**Learning without thinking is useless, but thinking without learning is dangerous.**
ତୁମେମାନେ ଯାହା ସବୁ ଚିନ୍ତା କରୁଛ, କିମ୍ବା ମତବ୍ୟକ୍ତ

କରୁଛ, ସେ ବିଷୟରେ କିଛି ବୁଝି ନାହିଁ । ଯେପରି କି ଆମର ଅଧିକାଂଶ ଲୋକ ରାଜନୀତି ବିଷୟରେ କିଛି ନ ଜାଣି ବି ଗାଁ ଗଣ୍ଡାରେ ଅଯଥା ଗଣ୍ଡଗୋଳ, ହାଣକାଟ ପ୍ରଭୃତିରେ ସର୍ବଦା ଲିପ୍ତ ଥାଆନ୍ତି ।

ରାଜୁ : କିନ୍ତୁ ପ୍ରଶ୍ନ ହେଉଛି, ଯାହାକୁ ଆମେ ବାନ୍ଧି ରଖିଥିଲେ ସେ ଆମର ଶତ୍ରୁ ନା ମିତ୍ର ।

ପ୍ରକାଶ : ସେ ଆମର ମିତ୍ର, ଯେପରି ସୋଭିଏତ୍ ରୁଷ ଭାରତର ମିତ୍ର ।

ପ୍ରଶାନ୍ତ : ପୁଣି ଭୁଲ୍, ଯେପରି ରୁଷିଆ ଜନସାଧାରଣ ଭାରତୀୟମାନଙ୍କର ମିତ୍ର ।

ରାଜୁ : ନୋ, ନୋ, ଅଲ ପ୍ରୋଟେଷ୍ଟ୍ ଆମେରିକା ଭାରତର ମିତ୍ର ରାଷ୍ଟ୍ର ।

ଅଜୟ : ନା ରୁଷିଆ ।

ପ୍ରଶାନ୍ତ : ନା ଆମେରିକା ଯୁକ୍ତରାଷ୍ଟ୍ର ।

ଅଜୟ : ତେବେ ଆରବ, ଆଫ୍ରିକୀୟ ରାଷ୍ଟ୍ରଗଣ ।

ପ୍ରଶାନ୍ତ : କିନ୍ତୁ ଶତାବ୍ଦୀ, ଶତାବ୍ଦୀ ଧରି ଭାରତର ବନ୍ଧୁତା ଚୀନ-ସହ, ଶ୍ରୀଲଙ୍କା ସହ ଅଦ୍ୱିତୀୟ, ଅନୁକରଣୀୟ ।

ରାଜୁ : ଯେପରିକି ଲତା ସହ ମୋ ବନ୍ଧୁତା ନିତାନ୍ତ ଘନିଷ୍ଠ, ଏକାନ୍ତ ନିବିଡ ।

ଅଜୟ : ଯେପରିକି ମୋ ପତ୍ନୀ ସହ ମୋ ଶତ୍ରୁତା ନିତାନ୍ତ ଜଘନ୍ୟ, ନିତାନ୍ତ ଆଦିମ ।

ରାଜୁ : ଏକାନ୍ତ ଘନିଷ୍ଠ, ଏକାନ୍ତ ଆଦିମ ।

ପ୍ରକାଶ : ନିତାନ୍ତ ଜଘନ୍ୟ, ନିତାନ୍ତ ନିବିଡ ।

(ସ୍ଥିର ଆଲୋକ)

ଅଜୟ : କିନ୍ତୁ ସେ ମହାନୁଭବ ବ୍ୟକ୍ତି କ'ଣ ଅନ୍ତରୀକ୍ଷରେ ମିଳାଇଗଲେ ?

ରାଜୁ : ପାଇଖାନାକୁ ଯାଇଥିବେ ।

ପ୍ରଶାନ୍ତ : ସୁନାଂଖଣି ସନ୍ଧାନରେ ଯାଇଥିବେ ।

ରାଜୁ : କଅଁଳ ମାଂସ ସନ୍ଧାନରେ ଇତସ୍ତତଃ ବୁଲୁଥିବେ ।

ଅଜୟ : କିନ୍ତୁ କେଉଁଠି ସନ୍ଧାନ ନାହିଁ ।

ପ୍ରଶାନ୍ତ : ହଁ କେଉଁଠି ଶୀଘ୍ର ସଂଧାନ ନାହିଁ ।

ପ୍ରକାଶ : କିନ୍ତୁ କିଏ ?

ରାଜୁ : ସେ ହିଟ୍‌ଲର୍ ।

ପ୍ରଶାନ୍ତ : ଆଇନ୍‌ଷ୍ଟାଇନ୍ ।

ଅଜୟ : ତୈମୁରଲଙ୍ଗ୍ ।

ପ୍ରଶାନ୍ତ : ଚୋର, ଡକାୟତ, ଧପ୍‌ପାବାଜ୍ ।

ରାଜୁ : ହିଟ୍‌ଲର୍ ।

ପ୍ରଶାନ୍ତ : ଆଇନ୍‌ଷ୍ଟାଇନ୍ ।

ରାଜୁ : ହିଟ୍‌ଲର୍ ।

ପ୍ରଶାନ୍ତ : ଆଇନ୍‌ଷ୍ଟାଇନ୍

ରାଜୁ : ହିଟ୍‌ଲର୍ ।

ପ୍ରଶାନ୍ତ : ଆଇନ୍‌ଷ୍ଟାଇନ୍ ।

ରାଜୁ : ଆଇ ସେ ହିଟ୍‌ଲର୍ ।

ପ୍ରଶାନ୍ତ : ଆଇ ସେ ଆଇନ୍‌ଷ୍ଟାଇନ୍ ।

ରାଜୁ : ସଟ୍ ଅପ୍ ହିଟ୍‌ଲର୍ ।

ପ୍ରଶାନ୍ତ : ସଟ୍ ଅପ୍ ଆଇନ୍‌ଷ୍ଟାଇନ୍ ।

ରାଜୁ : ସଟ୍ ଅପ୍, ବ୍ଲଡ଼ି ଇଡିଏଟ୍ ।

ପ୍ରଶାନ୍ତ : **Shut up, you son of a bitch !** (ଧସ୍ତା ଧସ୍ତି)

ପ୍ରକାଶ : ଚମତ୍କାର, କି ସୁନ୍ଦର ଇଂରାଜୀ ! କି ସୁନ୍ଦର ଭାଷା ! ଚମତ୍କାର ଶବ୍ଦ ସଂଯୋଜନା — **Son of a bitch ! Marvellous.** ଜ୍ଞାନର ପରିସମାପ୍ତି ।

ରଜତ : ପ୍ରଶାନ୍ତ, I warn you, don't meddle into this. ପ୍ରଶାନ୍ତ ବାବୁ ଜାଣି ରଖିବା ଉଚିତ ଯେ ମୋର ସାମାଜିକ ପ୍ରତିଷ୍ଠା ଅଛି । କୋଠା ବାଡ଼ି, କାର୍, ବ୍ୟାଂକ ବ୍ୟାଲାନ୍ସ, କ'ଣ ବା ନାହିଁ ପ୍ରଶାନ୍ତ ବାବୁ ପରି ମୁଁ ଦିବାଲୋକରେ କଳାବଜାର କରେ ନାହିଁ । ଖାଦ୍ୟ ପଦାର୍ଥ ଭେଜାଲ୍ କରେ ନାହିଁ । ମୁଁ ରାଷ୍ଟ୍ରକୁ ନିର୍ମାଣ କରେ । ଯାବତୀୟ ଉନ୍ନତିମୂଳକ କାମ, ଯଥା-- ରାସ୍ତାଘାଟ, ନଦୀନାଳ, ଅଟ୍ଟାଳିକା ଆଦିର ନିର୍ମାଣ, ସମାଜର ସମସ୍ତ ଗୁରୁଦାୟିତ୍ୱ ମୋ ଉପରେ ନ୍ୟସ୍ତ । ମୁଁ ବିଶ୍ୱକର୍ମା, ମୋ ବ୍ୟତିରେକ ସମାଜ ତିଷ୍ଠି ରହିବା ଅସମ୍ଭବ ।

ପ୍ରଶାନ୍ତ : ମୁଁ ବି ବ୍ୟବସାୟୀ ଶିଳ୍ପପତି । ରାଷ୍ଟ୍ର ଅର୍ଥନୀତି, ଭାରସାମ୍ୟ ନିମନ୍ତେ ବ୍ୟବସାୟ, ବାଣିଜ୍ୟ, ଶିଳ୍ପର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଯଦିଓ ବାଣିଜ୍ୟରେ ସାଧୁତା ରକ୍ଷା କରିବା ନିହାତି ମୁସ୍କିଲ୍, ତେବେ ରଜତ୍ ବାବୁଙ୍କ ପରି ମୁଁ ଅଟ୍ଟାଳିକା ତୋଳେ ନାହିଁ, ଯାହା ଦୁଇ ମାସରେ ଭାଙ୍ଗି ଚୂରମାର ହୋଇଯାଏ ଓ ଅଯଥା କେତେକ ମୂଲ୍ୟବାନ ଜୀବନ ନଷ୍ଟ ହୋଇଯାଏ । ସମାଜର ସବୁ ବଡ଼ ପଣ୍ଡା, ଯଥା—ରାଜନୈତିକ ନେତା ଅଫିସର୍, ବୁଦ୍ଧିଜୀବୀ ସମସ୍ତେ ମୋ ନିକଟରେ ବଶୀଭୂତ । ସମସ୍ତେ ଲକ୍ଷ୍ମୀଦ୍ୱାରା ବଶୀଭୂତ, ରଜତ୍ ବାବୁଙ୍କ ଠାରୁ ଆରମ୍ଭ କରି ବଡ଼ ହାକିମ ଯାଏ ।

ଯା ଦେବୀ ସର୍ବଭୂତେଷୁ ଲକ୍ଷ୍ମୀରୂପେଣ ସଂସ୍ଥିତା ।

ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ॥

ଏଣୁ ଆମେ ନେତାଙ୍କୁ ନିୟନ୍ତ୍ରଣ କରୁ । ହାକିମଙ୍କୁ ନିୟନ୍ତ୍ରଣ କରୁ । ରାଷ୍ଟ୍ରକୁ ନିୟନ୍ତ୍ରଣ କରୁ ।

ଅଜୟ : ମୁଁ କିନ୍ତୁ ବ୍ୟୁରୋକ୍ରାଟ୍ । ଅସଲ ଶାସକ, ସ୍ଥାୟୀ ଶାସକ । ସବୁ ଯନ୍ତ୍ରୀ, ମନ୍ତ୍ରୀ, ତନ୍ତ୍ରୀଙ୍କୁ ଠିକ୍ ରାସ୍ତାରେ ଚଳାଇ ସମାଜର ସାମୂହିକ କଲ୍ୟାଣ ସାଧନ କରିବା ମୋ କର୍ତ୍ତବ୍ୟ । ଅବଶ୍ୟ ସଂପ୍ରତିକ ଶାସନ

ବ୍ୟବସ୍ଥାରେ ସମୟେ ସମୟେ ବିବେକ ବିରୁଦ୍ଧରେ କାର୍ଯ୍ୟ କରିବାକୁ ହୁଏ, ନୈତିକତାକୁ ଜଳାଞ୍ଜଳି ଦେବାକୁ ହୁଏ । କିନ୍ତୁ ସେ ଦୋଷ ଏତେଟା ସ୍ପିରିସୁସ୍ ନୁହେ । ତାହା କେବଳ ଆମ ଦେଶରେ ସୀମାବଦ୍ଧ ନୁହେ, ସମସ୍ତ ରାଷ୍ଟ୍ରରେ ପରିବ୍ୟାପ୍ତ—a universal malady ତାହାର ଏକ ନିର୍ଦ୍ଦିଷ୍ଟ ରୂପରେଖ ନାହିଁ, ନିର୍ଦ୍ଦିଷ୍ଟ ଆଦିଅନ୍ତ ନାହିଁ । ତଥାପି ଅମେ ତା ବିରୁଦ୍ଧରେ ସଂଗ୍ରାମ କରିବା ନିମନ୍ତେ ସର୍ବଦା ପ୍ରସ୍ତୁତ । ସବୁବେଳେ ତ ସମସ୍ତ ଜନତାର ସର୍ବବିଧ ଉନ୍ନତି କରିବା ସମ୍ଭବ ନୁହେ । କିନ୍ତୁ greatest good of greatest number ପାଇଁ ଆମେ ସର୍ବଦା ଚେଷ୍ଟା କରୁ । ଯଦି ଭୁଲବଶତଃ ତାହା greatest good of smallest number ରେ ପରିଣତ ହୋଇଯାଏ, ତେବେ ଅନୁଶୋଚନାର ଅବଶ୍ୟକତା ନାହିଁ ।

ପ୍ରକାଶ : ମୁଁ କିନ୍ତୁ ଅଧ୍ୟାପକ । ଅନାଦି କାଳରୁ ଶିକ୍ଷକଙ୍କ ମହାନ୍ ଭୂମିକା ସମାଜ ସ୍ୱୀକାର କରି ଆସିଛି । ଆମେ ଜ୍ଞାନଦାତା ଗୁରୁ । ଶିକ୍ଷା ବ୍ୟତୀତ ସମାଜରେ କୌଣସି ଡାକ୍ତର, ଇଞ୍ଜିନିୟର, ପ୍ରଶାସକ ଉତ୍ପତ୍ତି ହେବା ସମ୍ଭବ କି ? ମାନେ ତଥାକଥିତ ଅତିମିକାଙ୍କ୍ଷୀ ଶାସକ, ନେତା, ଇଂଜିନିୟର, ଡାକ୍ତର, ଶିଳ୍ପପତି ଆଦି ସମାଜର ବଡ଼ପଣ୍ଡାମାନଙ୍କ ଠାରୁ ଶିକ୍ଷା ବାଦ୍ କରିଦେଲେ ଅବଶିଷ୍ଟାଂଶ କ'ଣ ? ଶୂନ୍ୟ । A big zero ସମାଜ କ'ଣ ତିଷ୍ଠି ପାରିବ ଶିକ୍ଷକଙ୍କ ବିନା ? ଅବଶ୍ୟ କୁହାଯାଏ ଛାତ୍ର ବିଶୃଙ୍ଖଳା ଛାତ୍ରମାନଙ୍କ ନୈମାନ୍ୟସ୍ତ ପତନ ଅବନତିର ମୂଳ କାରଣ ଶିକ୍ଷକ ସମାଜ । ଆଂଶିକ ଭାବେ ସତ୍ୟ । ସମାଜ ଆମ୍ଭଙ୍କୁ ଉପେକ୍ଷା କରିଛି, ଆମ ଉପରେ ସମସ୍ତ ଦାୟିତ୍ୱ ଲଦି ଦେଇଛି । ଆମର ପ୍ରତିବାଦର ଭାଷା ନାହିଁ । ସମାଜର ପ୍ରକୃତ ଶକ୍ତି ହିଁ ଯୁବ ଶକ୍ତି, ଛାତ୍ର ଶକ୍ତି । ଛାତ୍ରଙ୍କୁ ଆୟୁଧ କରି ଆମେ ଶାସନକଳକୁ 'ଧ୍ୱସ୍ତ ବିଧ୍ୱସ୍ତ କରି ଦେଇପାରୁ । ଆମର ବି ଅପରିସୀମ କ୍ଷମତା ।

ଅଜୟ : ରାଷ୍ଟ୍ରର ସମସ୍ତ କ୍ଷମତା ମୋ ଜରିଆରେ କାର୍ଯ୍ୟକାରୀ ହୁଏ । ଅଗାଧ ମୋ କ୍ଷମତା, ଅପରିସୀମ ମୋ ପ୍ରତିପତ୍ତି ।

ରାଜୁ : ବିପୁଳ ମୋ ଐଶ୍ୱର୍ଯ୍ୟ । ଅପରିସୀମ ମୋ ପ୍ରତିପତ୍ତି ।

ପ୍ରଶାନ୍ତ : ଅସୁମାରି ମୋ ସଂପଦ । ଅପରିସୀମ ମୋ ପ୍ରତିପତ୍ତି ।

ରାଜୁ : ପ୍ରତିପତ୍ତିର ଏକମାତ୍ର ଗୁରୁକାଠି ହେଉଛି ଧନ ସଂପତ୍ତି । ପ୍ରଶାନ୍ତ ବାବୁ ଶିଳ୍ପପତି, ବ୍ୟବସାୟୀ ହୋଇ ପାରନ୍ତି । କିନ୍ତୁ ବ୍ୟବସାୟ ସଂପଦ ବୃଦ୍ଧି ନିମନ୍ତେ ଏକମାତ୍ର ଆୟୁଧ ନୁହେ । ଅଜୟ ବାବୁ ଉଚ୍ଚପଦସ୍ଥ ପ୍ରଶାସନିକ ଅଧିକାରୀ ହୋଇପାରନ୍ତି କିନ୍ତୁ ସାଧୁ, ସଚ୍ଚୋଟ ହୋଇ କ'ଣ ନିଜର ଏଷ୍ଟାବ୍ଲିସ୍‌ମେଣ୍ଟ୍ ଚଳାଇ ପାରିବେ ? ପ୍ରକୃତରେ technocrat, specialist ମାନେ ପ୍ରକୃତ ଶାସକ । ତଥାକଥିତ ପ୍ରଶାସକ, ବ୍ୟୁରୋକ୍ରାଟଙ୍କ ସ୍ଥାନ ବହୁତ କମ୍ ।

ଅଜୟ : ସମାଜରେ କାହାର ଭୂମିକା କେତେ ଗୁରୁତ୍ୱପୂର୍ଣ୍ଣ ତାହା କ'ଣ ଏ ଯାଏଁ ଅଛପା ଅଛି ? ଯୁକ୍ତିର ଆବଶ୍ୟକତା କେଉଁଠି ? ଶାସକ ଯେ ସମାଜର ସାମଗ୍ରିକ ଉନ୍ନତି ପାଇଁ ଚେଷ୍ଟା କରେ, ଏବଂ ସମସ୍ତ ବିଭାଗକୁ ନିୟନ୍ତ୍ରଣ କରେ, ଏଥିରେ ସନ୍ଦେହ ଅଛି ? ଏଣୁ ଶାସକ ହିଁ ସର୍ବୋଚ୍ଚ ଆସନ ଦାବୀ କରେ ।

ରାଜୁ : ନା, technocrat

ପ୍ରଶାନ୍ତ : ନା, ଶିଳ୍ପପତି

ପ୍ରକାଶ : ଠିକ୍ ଅଛି, ଏତେ ଝଗଡା କାହିଁକି ? କିଏ କାହାଠାରୁ କମ୍ ନୁହନ୍ତି, ଅଧିକ ବି ନୁହନ୍ତି । ଚାଲ ଘରକୁ ଫେରିଯିବା ।

ଅଜୟ : ଘର ? ମିସେସ୍ ତ କ୍ଲବରୁ ଫେରି ନଥିବେ । ଝିଅ ସ୍କୁଲ୍ ହଷ୍ଟେଲରେ । ଘରକୁ କେତେ ଦିନ ନ ଫେରିଲେ ବି ଚଳିବ ।

ରାଜୁ : ତୁମେ ତ ଜାଣ, ମୁଁ ଯେଉଁଠି, ମୋ ଘର ସେଇଠି । କିନ୍ତୁ ତୁମ ପରି ବିବାହିତ ପଶୁମାନଙ୍କୁ ଦେଖିଲେ ବହୁତ ଦୟା,

କରୁଣା ଭବ ଜାତ ହୁଏ । ନିଜର ସ୍ୱାତନ୍ତ୍ର୍ୟ, ବ୍ୟକ୍ତିତ୍ୱ ବଜାୟ ରଖିବା ଯୁଗ ମୁସ୍କିଲ୍ ।'କେବଳ 'ଦେହି ପଦ ପଲ୍ଲବ ମୁଦାରଂ,' ନା କଣ କହୁଛନ୍ତି ?

ଅଜୟ : ମାନେ

ରାଜୁ : ବିବାହିତ ପୁରୁଷ ହିଁ ତ ଶଠ ।

ପ୍ରକାଶ : ତୁମେଇ ଏକମାତ୍ର ଆଦର୍ଶ ମାନବ ।

ପ୍ରଶାନ୍ତ : ଚାଲ ଫେରିଯିବା । ମୋର ଗୋଟାଏ appointment ଥିଲା ମିସେସ୍ ମହାପାତ୍ର ଅପେକ୍ଷା କରିଥିବେ ।

ରାଜୁ : ମିସେସ୍ ମହାପାତ୍ର ମାନେ ଶେଷ, ଲୁପ୍ତି ଅଧ୍ୟାୟ ସମାପ୍ତ—

ପ୍ରଶାନ୍ତ : ଦେଖନ୍ତୁ, କାହା ମନରେ ଆଘାତ ଦେବା ପାଇଁ ମୁଁ ଚାହେଁନି, ମଣିଷ ତ ପୁରୁଣା ବସ୍ତ୍ର ତ୍ୟାଗ କରି ନୂଆ ବସ୍ତ୍ର ପରିଧାନ କରେ ।

ରାଜୁ : ଆରେ ହେ, କି ସୁନ୍ଦର ଦିଗ୍‌ଦର୍ଶନ—ଗୁରୁଦେବ, ପ୍ରଣାମ, ମୋତେ ଶିଷ୍ୟ କରି ନିଅନ୍ତୁନା ।

ଅଜୟ : ଏ ମନ୍ତ୍ରଟି ପ୍ରକାଶ ବାବୁଙ୍କୁ ଶିକ୍ଷା ଦେଉନା—ଯେତେ ବୁଝାଇଲେ ବି କ'ଣ ବାହା ହେବା ପାଇଁ ରାଜି ହେବେ ?

ପ୍ରଶାନ୍ତ : ବାହା ହେବା ପାଇଁ କାହିଁକି କହିବ ? ନୋହିଲେ କ'ଣ ଚଳିବନି ? ଅଯଥା ଅଧିକ ଦାୟିତ୍ୱ ।

ଅଜୟ : କିନ୍ତୁ ତୁଆମାନଙ୍କର ଅସୁବିଧା ହେଉନି—

ରାଜୁ : ତୁଆମାନଙ୍କର କିଛି ଅସୁବିଧା ନାହିଁମ, ଯାହା କିଛି ପ୍ରକାଶ ବାବୁଙ୍କର ନା—

ପ୍ରକାଶ : ମୋ ବିଷୟରେ ଏତେ ବ୍ୟସ୍ତ ହେବା ଦରକାର ନାହିଁ । କିନ୍ତୁ ରାଜୁ, ତୁମେ ଲତାକୁ ବାହା ହୋଇ ଯାଉନା କାହିଁକି ? ବିବାହ ନ କରି ମିଶି ରହିବା ମୋଟେ ଶୋଭନୀୟ ନୁହେ ।

ରଜନୀ : ମୁଁ ବିବାହରେ ବିଶ୍ୱାସ କରେନା । ବେଦୀରେ ବସି ଅଗ୍ନି ସାମନାରେ ଅଜଣା ଝିଅଟିର ହାତ ଧରି ଦେଲେ ସବୁ କିଛି ଶୋଭନୀୟ ହୋଇଗଲା ? ବ୍ରାହ୍ମଣ ମହାଶୟଙ୍କ ମନ୍ତ୍ର ପଢ଼ୁଛନ୍ତି, ତାର ଅର୍ଥ କ'ଣ ସେ ବିଷୟରେ କଏ ଜାଣେ ।

ଅଜୟ : କାହିଁକି, ରେଜିଷ୍ଟର୍ଡ ମ୍ୟାରେଜ୍ କରୁ ନାହାନ୍ତି ?

ରଜନୀ : ତହିଁରେ ବି ମୋର ବିଶ୍ୱାସ ନାହିଁ । ଏସବୁ ପ୍ରହସନର ଆବଶ୍ୟକତା କ'ଣ ? ଭୋଜି ଖାଇବା ଦରକାର ତ ବନ୍ଦୋବସ୍ତ କରିଦେବା ।

ପ୍ରଶାନ୍ତ : ଠିକ୍ ଅଛି, ଶୀଘ୍ର ବନ୍ଦୋବସ୍ତ କର ।

ପ୍ରକାଶ : ବିବାହ ଏକ ସାମାଜିକ ସ୍ୱୀକୃତି ।

ଅଜୟ : କିନ୍ତୁ ରଜନୀ ବାବୁ ତ ଏକ ଅସାମାଜିକ ଜୀବ । ଅବୈଧ ସନ୍ତାନ ପ୍ରତି ଭୟ ନାହିଁ ତାର ।

ପ୍ରକାଶ : ଶୁଣ, ବିବାହ ଏକ ସାମାଜିକ ଅନୁଷ୍ଠାନ ଯଦ୍ଦ୍ୱାରା ସ୍ୱାମୀ ଓ ସ୍ତ୍ରୀଙ୍କ ଦାୟିତ୍ୱ, ଅଧିକାର, ସୁଯୋଗ ତଥା ସମ୍ମାନ ସାବ୍ୟସ୍ତ ହୁଏ । ରଜନୀ ଓ ପ୍ରଶାନ୍ତ ପରି ଖିରୁ, କାପୁରୁଷ, ଅସାମାଜିକ ଜୀବ ବିବାହର ପବିତ୍ର ବନ୍ଧନରେ ଆବଦ୍ଧ ନ ହୋଇ ଯୌନ ସମ୍ପର୍କ ସ୍ଥାପନ କରନ୍ତି । ତଦ୍ଦ୍ୱାରା ସମାଜ କଳୁଷିତ ହୁଏ ଏବଂ ବର୍ଣ୍ଣସଙ୍କର ସନ୍ତାନ ଉତ୍ପନ୍ନ ହୁଅନ୍ତି ।

ରଜନୀ : ଶିକ୍ଷକ ମହାଶୟ, ସୀମା ଲଙ୍ଘନ କରନ୍ତୁ ନାହିଁ । ଲୋକସଂଖ୍ୟା ଯେପରି ବଢ଼ି ଚାଲିଛି, ସନ୍ତାନ ଉତ୍ପାଦନ ଆମର ଏକମାତ୍ର ଲକ୍ଷ୍ୟ ନୁହେଁ ।

ପ୍ରଶାନ୍ତ : ଅଧ୍ୟାପକ ମହାଶୟ, ଆପଣଙ୍କ ଭାଷଣ ବନ୍ଦ କରନ୍ତୁ । ଆପଣଙ୍କ ବିଶ୍ୱାସ, ମୂଲ୍ୟବୋଧ ଅନ୍ୟ ଉପରେ ଲଦି ଦିଅନ୍ତୁ ନାହିଁ ।

ଅଜୟ : ସେ ଝିଅଗୁଡ଼ା ବି କ ବଛାଏ ଧରଣର—ଯେଉଁଠି କି ଲଟେଇ ଯିବେ । ଅନ୍ୟ କେଉଁଠି ବାଧା ନ ହୋଇ ଏ ରାଜୁ, ପ୍ରଶାନ୍ତ ପରି ଅପଦାର୍ଥଙ୍କ ପାଖରେ କାହିଁକି ପଡ଼ି ରହୁଛନ୍ତି ?

ରାଜୁ : ବିବାହ ପାଇଁ ସେମାନେ ଚାନ୍ସ ପାଉଛନ୍ତି କେଉଁଠି ?

ପ୍ରକାଶ : ତେଣୁ ତୁମେ ତାଙ୍କୁ exploit କରୁଛ —

ପ୍ରଶାନ୍ତ : ନା, ନା, experiment

ଅଜୟ : ବ୍ରହ୍ମଚର୍ଯ୍ୟ ଏକ୍ସପେରମେଣ୍ଟ ?

ପ୍ରଶାନ୍ତ : ହଁ, ରାଜୁବାବୁ ବ୍ରହ୍ମଚର୍ଯ୍ୟ ଏକ୍ସପେରମେଣ୍ଟ ଅଭ୍ୟାସ କରୁଛନ୍ତି—ମୁଁ ନୁହେଁ ।

ଅଜୟ : ଚାଲ, ସମସ୍ତେ କ୍ଲବ୍ ଚାଲିଯିବା ।

ପ୍ରଶାନ୍ତ : ନା, ଗୁରୁଦେବ ପରି ପ୍ରବଚନ ଦେବେ । ମୋର ଏକ ଗୋପନୀୟ କଥା ବି ଅଛି ।

ପ୍ରକାଶ : ଗୋପନୀୟ କ'ଣ ମ—ସେ ହୋଲସେଲର୍ ଲାଇସେନ୍ସ ବିଷୟ ହୋଇଥିବ ସମସ୍ତେ ତ ଜାଣନ୍ତି, ଆହୁରି ଗୋପନୀୟତା ରକ୍ଷା କରୁଛନ୍ତି ପ୍ରଶାନ୍ତ ବାବୁ ।

ରାଜୁ : ହଁ, ମୋ ପ୍ରମୋଶନ୍ ବିଷୟ ବି କହୁଥିଲି, ପୁଣି କ୍ୟାପିଟାଲରେ ପୋଷ୍ଟିଂ ।

ଅଜୟ : ଇଲେକ୍‌ଟ୍ରନିକ୍ସ କର୍ପୋରେସନ୍‌ର ଚେୟାର୍‌ମ୍ୟାନ୍ ପୋଷ୍ଟଟି ଖାଲି ହେଉଛି ଯେ, ଗୁରୁଦେବ ଚେଷ୍ଟା କଲେ ହୋଇପାରିବ—

ପ୍ରକାଶ : ମୋର ନା ପ୍ରମୋଶନ୍, ନା ବିଜନେସ୍ ଡିଲ୍ । ତଥାପି ଗୁରୁଦେବଙ୍କୁ ସାକ୍ଷାତ କରିନେବା ।

ଅଜୟ : କେତେବେଳେ ଗୁରୁଦେବ ଫେରିବେ ଯେ ।

ପ୍ରଶାନ୍ତ : ଏଠି ହିଁ ଅପେକ୍ଷା କରିବା—ନା' କଣ କହୁଛ ? ବସିଯାଅ । ରାଜୁ ପାଖରେ ତ ମାଲ୍ ଅଛି—ଆଉ ଚଣାଚୁରି କଛି

ରାଜୁ : ଆରେ ସିଗାରେଟ୍ ତ ସରିଯାଇଛି

ପ୍ରକାଶ : ହଉ ଚଳିବ, ଆଚ୍ଛା ରାଜୁ—ସତରେ କ'ଣ ଦେବଦୂତଙ୍କ ଭଳି ମଣିଷ ଜୀବନ ଏପରି କାଟିଦେବାକୁ ଇଚ୍ଛା ହୁଏ ?

ରାଜୁ : ମାନେ—

ପ୍ରକାଶ : ମାନେ, ତୁମର ଶୃଙ୍ଖଳାହୀନ, ଲଗାମଛଡ଼ା ଜୀବନ

ଅଜୟ : ତୁମେ ଶିକ୍ଷକ କି ନା—ସବୁ କଥା ତୁମକୁ ଲଗାମଛଡ଼ା, ଶୃଙ୍ଖଳାହୀନ ଜଣାପଡ଼େ ନୁହେଁ ? Teaching, cheating

ପ୍ରକାଶ : ତାହା ତ ମୋର ଜନ୍ମଗତ ଅଧିକାର ।

ପ୍ରଶାନ୍ତ : ଅନ୍ୟମାନଙ୍କ ବିଷୟରେ ଜାଣିବାକୁ ତୁମର ଏତେଟା ବ୍ୟାକୁଳତା କାହିଁକି ପ୍ରକାଶ ବାବୁ, ପ୍ରଥମେ ନିଜକୁ ସମ୍ଭାଳନ୍ତୁ ।

ପ୍ରକାଶ : ମୁଁ କ'ଣ ତୁମପରି ଏତେ ଦୁର୍ନୀତିଗ୍ରସ୍ତ ହୋଇଛି ନା କଳା-ଟୋପେଇ କରୁଛି ।

ପ୍ରଶାନ୍ତ : ରହିଁଲେ ବି କଣ ହୋଇପାରିବ ? ଆରେ ଭାଇ, ନୀତି ଦୁର୍ନୀତି ମଧ୍ୟରେ ତାରତମ୍ୟ ବହୁତ କ୍ଷୀଣ । ସମାଜର ଏପରି ଅଙ୍ଗ ଅଛି ଯାହା ଶୋଷଣ, ଦୁର୍ନୀତି ଭ୍ରଷ୍ଟାଚାରରେ କଳୁଷିତ ହୋଇନାହିଁ ।

ପ୍ରକାଶ : ଏମିତି କ'ଣ ରହିଥିବ ? ରାଜୁ ବାବୁ, ସତ କହନ୍ତୁନା, ଏଥିପାଇଁ କେବେ ଗ୍ଳାନି ଆସେ ନାହିଁ ?

(ରାଜୁ ମୁହଁରେ ଅପରାଧବୋଧର ଛାୟା)

ରାଜୁ : ହଁ ଆସେ, ପୁଣି ବୁଦ୍ ବୁଦ୍ ପରି ମିଳାଇଯାଏ ।

ପ୍ରକାଶ : ଅଜୟ ବାବୁ, ଆପଣ କହନ୍ତୁ ନା—ଆପଣ ଜାଣନ୍ତି, ଦୁର୍ନୀତି, ଶୋଷଣ, ଭ୍ରଷ୍ଟାଚାରରୁ ନିଜକୁ ମୁକ୍ତ କରି ପାରି ନାହାନ୍ତି—

ବରଂ ଅନେକ ସମୟରେ ଖାର ଦର୍ପରେ ସାମିଲ୍ ହୋଇଛନ୍ତି ।

(ଅଜୟ ମୁହଁରେ ହତାଶା, କ୍ରୋଧର ଛାୟା)

ଅଜୟ : It is the way of life you know—The system is evil. We are mere cogs in the machine.

ପ୍ରକାଶ : ପ୍ରଶାନ୍ତ ବାବୁ, କହନ୍ତୁ ନା, କିଛିଟା ଆତ୍ମ ବିଶ୍ଳେଷଣ କରନ୍ତୁ— ଆପଣ ଯାହା କରୁଛନ୍ତି କଣ ଠିକ୍ କରୁଛନ୍ତି—ଏଥିପାଇଁ ନିଜ ଚକ୍ଷୁରେ ଆପଣ ଶ୍ରେଷ୍ଠ ହୋଇ ଯାଆନ୍ତି ନାହିଁ, ଅପରାଧୀ ହୁଅନ୍ତି ନାହିଁ ?

(ପ୍ରଶାନ୍ତ ମୁଖରେ ଗ୍ଳାନି, ଦୁଃଖର ଛାୟା ସୁସ୍ପଷ୍ଟ)

ପ୍ରଶାନ୍ତ : ହଁ, ବହୁ ସମୟରେ ଅନୁତାପ କରିହୁଏ ନାହିଁ । ପଶ୍ଚାତ୍ତାପର ପନ୍ଥା ନଥାଏ । କିନ୍ତୁ ଆପଣ, ଆପଣ ନିଜେ ଠିକ୍ ଅଛନ୍ତି ?

ପ୍ରକାଶ : ନା

[ ସାଇକ୍ଳୋରାମାରେ ସୂର୍ଯ୍ୟାସ୍ତର ରଙ୍ଗ । ଅନ୍ଧାର କ୍ରମେ ଘନୀଭୂତ ହେଲା । କ୍ରମଶଃ ପ୍ରିଜମ୍‌ର ବର୍ଣ୍ଣାଳୀ ସାଇକ୍ଲୋରାମାରେ ଦେଖାଗଲା । ଚରିତ୍ରମାନେ ସମସ୍ତେ ଅନ୍ଧାରରେ । ଯେ ସଂଳାପ ଉଚ୍ଚାରଣ କରିବ କେବଳ ତା ମୁହଁରେ ତୀବ୍ର ଆଲୋକ ସଂପାତ ]

ଅଜୟ : ମୋର ଯେ ବହୁତ କାମ ଥିଲା
କାର୍ଯ୍ୟ ଅସରନ୍ତି କାର୍ଯ୍ୟ
ଫାଇଲ୍ ପରେ ଫାଇଲ୍
ଅସରନ୍ତି ଚାପ, ଘଣ୍ଟାଘଣ୍ଟା ଦ୍ୱନ୍ଦ୍ୱ,
ସବୁ କେମିତି ଝାପ୍‌ସା ଝାପ୍‌ସା
ବିଚିତ୍ର ବର୍ଣ୍ଣାଳୀ
ସବୁଠି ନିର୍ଜନତା, ଆଲୁଅର ଯନ୍ତ୍ରଣା
ଗ୍ଳାନିର ଉଚ୍ଛ୍ୱାସ, ଅବ୍ୟକ୍ତ ବେଦନା

କଦାକାର ପ୍ରେତଙ୍କର ଡୁଏଟ୍ ଟ୍ୱିଷ୍ଟ୍
ବ୍ୟାଲେ, ଡ଼ୁଏଟ୍, ଟ୍ୱିଷ୍ଟ୍ ଓଃ

ରାଜୁ : ମୋର କଳ୍ପ ସୃଜିତ ପ୍ରାସାଦ
ନଭଶ୍ଚୁମ୍ବୀ, ଶଙ୍ଖ ମଲମଲ
ଧୂଳିସାତ୍ ହୋଇସ୍ତାରେ ମୁହୂର୍ତ୍ତ ମଧ୍ୟରେ
ଚନ୍ଦ୍ର ହସେ ରାତ ଦିନ ଗ୍ଲାନିର ସହରେ
ସ୍ନାୟୁର ସମୁଦ୍ରେ ଭାଙ୍ଗେ ଅସଂଖ୍ୟ ଜୁଆର
ପାଠ ସବୁ ଡ଼୍ରୋର ବନ୍ଦୀ ହୁଏ
ବିଚିତ୍ର ପ୍ରଣୟର ବିଭିନ୍ନ ହିଲ୍ଲୋଳେ
ମିଳନ ଓ ବିଚ୍ଛେଦର ଅନେକ ଆବେଗ, ଅନେକ ଉଚ୍ଛ୍ୱାସ
ଉଦ୍ଭଟ, ନିରର୍ଥକ, ରସହୀନ

ପ୍ରକାଶ : ସବୁ କଳ୍ପ ଭୁଲ୍ ହୋଇଯାଏ,
ସବୁ କିଛି ଭୁଲ୍ ହୋଇଯାଏ,
ଏଠି ଖାଲି ଘୋଡ଼ା ଦୌଡ଼
ହାର ଜିତ୍, ଦ୍ୱେଷ ଓ ବିଦ୍ୱେଷ,
ଅଗ୍ନାଗ୍ନି ବନସ୍ତେ କାନ୍ଦେ ବିଷର୍ଣ୍ଣ ହରିଣୀ
ଶାପ ଗ୍ରସ୍ତା ରମ୍ଭା ଖୋଜେ ଅନେକ ପାଥେୟ
ସମୟର ପାଦ ସବୁ ବଢ଼ି ବଢ଼ି ଯାଏ
ସିଗାରେଟ୍ ଧୂଆଁ କୁଣ୍ଡଳୀରେ ସବୁ ସରିଯାଏ,
ସରିଯାଏ ସବୁ ପ୍ରତିଶ୍ରୁତି,
ପାପ ସବୁ ଲମ୍ବି ଯାଏ ବିବେକ ଗହ୍ୱରେ ।

ପ୍ରଶାନ୍ତ : କିଏ ବୁଝେ ମୋର ଭାଷା,
ବ୍ୟଥାତୁର ହୃଦୟର ବିଚ୍ଛିନ୍ନ ସଂଳାପ
ମୁଖା ତୁମ ଖୋଲି ଦେଲେ ସବୁ କିଛି ହୁଲ୍‌ସ୍ଥୁଲ୍ ହୁଏ,
ଅଳଅଳ ରାଜଜେମା ଲେଟିଯାଏ ପ୍ରହରୀର ବକ୍ଷେ
ଲିପ୍ତ ହୁଏ ନିଷିଦ୍ଧ ମୈଥୁନେ,

ସବୁ ଏଠି କଞ୍ଚା ଦେହ,
କଞ୍ଚା ଲୁହ, କଞ୍ଚା ମିଛ, ଆଶା ଓ ହତାଶା,
ଅବିଶ୍ୱାସ, ପ୍ରବଞ୍ଚନା ଲୁଚକାଳି ଖେଳେ,
ଯୌବନ ଅସ୍ତମିତ ହୁଏ ବ୍ୟର୍ଥତାର ଦାଗେ ।

ଅଜୟ : ସବୁ ଖାଲି ବୋର୍‌ଡ଼ମ୍,
ସ୍ୱାର୍ଥ ଓ କାମନାର ଅଦ୍ଭୁତ ମିଶ୍ରଣ
ସବୁ ଶାନ୍ତି, ସବୁ ପ୍ଲାନ୍, ସବୁ ଆଶା, ସବୁ ସ୍କିମ୍
ଭାଙ୍ଗି ଯାଏ, ଅନାୟାସେ,
ଫସିଲ୍‌ରେ ରୂପାନ୍ତର ହୁଏ ।
ଝଲ୍‌ମଲ୍ ସ୍ୱପ୍ନ ସବୁ,
ଚକ୍‌ଚକ୍ କାଚ ଢଳି ଚୂରମାର ହୁଏ ।
ଅଗ୍ନି ସବୁ ଖାଇ ଯାଏ ଖାଣ୍ଡବର ବିସ୍ତୀର୍ଣ୍ଣ ବନାନୀ,
ପଶୁ ପକ୍ଷୀ, ବୃକ୍ଷଲତା, ଇନ୍ଦ୍ରଧନୁ ଜଳି ପୋଡି ନଷ୍ଟ ପାନ୍ତି
ଆମେ ସବୁ ଅପାଇଗ ଚିତ୍ରସେନ
ଶଂକାକୁଳ ହୋଇଯାଉ ଦୁର୍ଯ୍ୟୋଧନ ଡ଼ାକେ ।

ପ୍ରଶାନ୍ତ : ଆମ ମୁଖେ ସ୍ପଷ୍ଟ ହୁଏ
ମୃତ୍ୟୁର ସେ କରାଳ ଲହରୀ,
ଆମ ଦେହେ ବଢ଼ି ଯାଏ
ସ୍ତୂପ ସ୍ତୂପ ପାପର ବିରାଟ ପ୍ରାସାଦ
ଦୁର୍ନୀତି ଓ ବ୍ୟଭିଚାର,
ଲକ୍ଷ ଲକ୍ଷ କଳା ଟଙ୍କା ବୋଝ
ହିସାବ ରଖି ରଖି ଚିତ୍ରଗୁପ୍ତ କ୍ଳାନ୍ତ ଆଜି
ଯମଦୂତ ବ୍ୟଥିତ, ବିରକ୍ତ ।
ତେବେ ଆମ ଲମ୍ବି ଯାଏ ପାତାଳକୁ ପ୍ରତିଦିନ
ଫେରିବାର ଶକ୍ତି ନାହିଁ
ଅନୁଶୋଚନା ରାସ୍ତା ବନ୍ଦ ଭୟାନକ ଗର୍ତ୍ତେ ।

ପ୍ରକାଶ : ସବୁ ଶକ୍ତି, ସବୁ ଶୌର୍ଯ୍ୟ, ସାହସ, ଗୌରବ
ସବୁ ଲୁପ୍ତ, ପଡ଼ୁଛୁ ନପୁଂସକ
କଳିଯୁଗ ବୃହନ୍ନଳା ଆମେ
ରୂପହୀନ, ଗୁଣହୀନ, ସୁଗନ୍ଧବିହୀନ
ଖାଉଛନ୍ତି ହୁଏ ପ୍ରାଣ
କାଳ ଭୈରବର ମନ୍ଦ୍ର ବିକଟାଳ ରବେ
ଅରୁଣ ଯାଉଛି ଲିଭି
ଅମା ଅନ୍ଧାରର ଏଇ ଅସୀମ ସାମ୍ରାଜ୍ୟେ ।

ରାଜୁ : ଜ୍ଞାନ, ବୁଦ୍ଧି, ଦୟା, କ୍ଷମା ସଦ୍‌ଗୁଣ ରାଜି
ବାଷ୍ପ ହୋଇ ଶୂନ୍ୟେ ମିଶେ ଇଥର୍‌ର ସହ
ଭିଜିଯାଏ ଫମ୍ପା ଦେହ, ଫମ୍ପା ମନ, ଫମ୍ପା ପ୍ରାଣ,
ସମସ୍ତଙ୍କ ଯନ୍ତ୍ରଣା ବି ଏକା ଭଳି
ସଂଗ୍ରାମର ଏକା ରଙ୍ଗ, ଏକା ସ୍ୱାଦ
ଜାନୁଆର ଲେଲିହାନ ଜିହ୍ୱା
ଧପ୍ ଧପ୍ ହେଉଥାଏ ମୋ ପ୍ରିୟାର ବିପୁଳ ବକ୍ଷରେ
କୌରବ ଓ ପାଣ୍ଡବ ସବୁ
ମଣିଯାଇ ଧକ୍‌କା ଖା'ନ୍ତି
ଆକାଶର ସୁରମ୍ୟ ପ୍ରାଚୀରେ ।

ପ୍ରଶାନ୍ତ : ଠିକ୍ ଅଛି, ରାଜୁ ବାବୁ ଏତେଟା ସେଣ୍ଟିମେଣ୍ଟାଲ୍ କାହିଁକି ?
ଗୋଟାଏ ପେଗ୍ ହୋଇ ଯାଉନା ।

ରାଜୁ : ଆଚ୍ଛା ।

(ରାଜୁ ଓ ପ୍ରଶାନ୍ତ ସୁରାପାନ କରଛନ୍ତି)

ପ୍ରକାଶ : ଆଦ୍ୟ ଯୌବନରେ ଝୁଲିଯାଏ ପ୍ରଚୁର ସମ୍ଭାବନାର ବାଦଲ, ବହୁତ ଆଶାର ଇନ୍ଦ୍ରଧନୁ । କଅଁଳ ଅରୁଣର ଗୋଲାପି ଜ୍ୟୋତି ଅଧିକ ରଙ୍ଗାୟିତ କରେ ମନକୁ । କିଛିକ୍ଷଣ ପରେ, ବାସ୍ତବତାର ତୀବ୍ର ରୌଦ୍ର ତାପରେ ମିଳେଇ ଯାଏ ଅନ୍ତରୀକ୍ଷ ମଧ୍ୟେ ।

ଅଜୟ : ତାମସ ମଧ୍ୟରେ ଜ୍ୟୋତିର ସନ୍ଧାନ
ମୃତ୍ୟୁ ମଧ୍ୟରେ ଅମୃତର ବାସ୍ନା ଖୁବ୍ ରମଣୀୟ
ଅସତ୍ୟ ମଧ୍ୟରେ ସତ୍ୟର ପ୍ରତିଶ୍ରୁତି
ଏକାନ୍ତ ଆଦରଣୀୟ ।

ରାଜୁ : ଏକାନ୍ତ ଆଦରଣୀୟ, ଏକାନ୍ତ ଆଚରଣୀୟ ।

ପ୍ରକାଶ : ଏକାନ୍ତ ଆଦରଣୀୟ, ଏକାନ୍ତ ଆଚରଣୀୟ ।

ପ୍ରଶାନ୍ତ : ଏକାନ୍ତ ଆଦରଣୀୟ, ଏକାନ୍ତ ଆଚରଣୀୟ ।

ରାଜୁ : କ'ଣ ?

ଅଜୟ : କ'ଣ ?

ପ୍ରକାଶ : କ'ଣ ?

ପ୍ରଶାନ୍ତ : ମୁଁ ଜାଣେନା

ଅଜୟ : ମୁଁ ଜାଣେନା

ରାଜୁ : ମୁଁ ଜାଣେନା, କିନ୍ତୁ ଏତେ ଶୀଘ୍ର ଭୁଲିଗଲେ ?

ଅଜୟ : ଛାଡ଼, କିନ୍ତୁ ଭଲ ଲାଗୁନି···

ପ୍ରଶାନ୍ତ : ଯଦି କିଛି ଚଣାଚୁର, କିଛି ମଟନ୍ କଟ୍‌ଲେଟ୍ ଆସି ଯାଆନ୍ତା ନା

ପ୍ରକାଶ : ଚେଷ୍ଟା କରୁନା

ଅଜୟ : ନା, କେବଳ ଚିନ୍ତା କର

ରାଜୁ : ଠିକ୍, ଚିନ୍ତାରାଜ୍ୟ ବାସ୍ତବତା ଅପେକ୍ଷା ଅଧିକ ଶାଶ୍ୱତ, ଅଧିକ ସତ୍ୟ ।

ଅଜୟ : ରଜନୀଗନ୍ଧାର ଭୁରୁଭୁରୁ ବାସ୍ନା କମ୍ବା କୋଣାର୍କ ଉଲଗ୍ନ ନଟୀର ଜୀବନ୍ତ ବର୍ତ୍ତୁଳ ବକ୍ଷୋଜ କି ଚମତ୍କାର ।

ପ୍ରଶାନ୍ତ : ପୀନ ପୟୋଧର ପରସର ମର୍ଦ୍ଦନ ଚଞ୍ଚଳ କର ଯୁଗଶାଳୀ,
ଧୀର ସମୀରେ ଯମୁନା ତୀରେ ବସତି ବନେ ବନମାଳୀ ।

ପ୍ରଶାନ୍ତ : (ତାଳିମାରି) Marvellous, କୋଣାର୍କ ଭୁବନେଶ୍ୱର ନଟୀର ବର୍ଣ୍ଣିଳ ବକ୍ଷୋଜ
ନଟୀଟି ପ୍ରମତ୍ତ, ମୈଥୁନରତ ଏକାଧିକ ପୁରୁଷ ସହ—
Marvellous

ପ୍ରକାଶ : ଛି, ଅସଭ୍ୟ, ଅଭଦ୍ର—

ପ୍ରଶାନ୍ତ : ଏଥିରେ ଅଭଦ୍ରତା ବା ଅଶ୍ଳୀଳ କେଉଁଠି ? ମନ୍ଦିରର ଗାତ୍ରରେ ଅସଂଖ୍ୟ ସଂବେଗୀ, ସୀମାହୀନ ମୈଥୁନର ଜୀବନ୍ତ ଚିତ୍ର, ଯେପରିକି ରତି ତୃଷ୍ଣାର ଉନ୍ମେଷରେ ହିଁ ଭକ୍ତିର ଉଦ୍ରେକ । ରତି ଲାଳସା ଅପରିସୀମ, ଅନ୍ତହୀନ ।

ଅଜୟ : ବାପା, ମା, ଭାଇ, ଭଉଣୀ କୌଣସି ନିର୍ଦ୍ଦିଷ୍ଟ ପୁଣ୍ୟ ଦିନରେ ଯିବ ମନ୍ଦିରକୁ ଯାଇ ସେ ସବୁ ଚିତ୍ର ଦେଖି ପକାନ୍ତି ନା ଭକ୍ତ ସବୁ ରତିସାଗରୀଙ୍କ ହୋଇଯାଏ—ଅଯଥା ପାପ ଚେତନାରେ ମୁଣ୍ଡ ତଳକୁ ହୋଇଯାଏ ।

ପ୍ରଶାନ୍ତ : ତେବେ ଉପାୟ କ'ଣ ?

ପ୍ରକାଶ : ସେ ସବୁ କାମୋଦ୍ଦୀପକ ମୂର୍ତ୍ତିକୁ ମନ୍ଦିର ଗାତ୍ରରୁ ମୂଳୋତ୍ପାଟନ କରିବା ଉଚିତ ।

ରାଜ : ତଦ୍ଦ୍ୱାରା ଯେପରି ପୃଥିବୀରୁ ଯୌନ ଚେତନା ଲୋପ ପାଇଯିବ ।

ପ୍ରକାଶ : କିନ୍ତୁ ମନ୍ଦିରକୁ ଲୋକେ ପୂଜା ଅର୍ଚ୍ଚନା ପାଇଁ ଯାଆନ୍ତି ନା—

ରାଜ : ସବୁ ଲୋକେ ଯାଆନ୍ତିନି ।
କେତେକ ବୋଧେ ସେ ମୂର୍ତ୍ତିକୁ ହିଁ ଦେଖିବାକୁ ଯାଆନ୍ତି ।

ପ୍ରଶାନ୍ତ : ନା, ସେପରି ଲୋକଙ୍କ ସଂଖ୍ୟା ବହୁତ କମ୍ ।

ଅଜୟ : ତେବେ କୋଣାର୍କ, ଖଜୁରାହୋ, ଅଜନ୍ତା, ଏଲୋରା ଏତେ ଜନପ୍ରିୟ କାହିଁକି ?

ରାଜ : ମାଂସ ଓ ମୈଥୁନର ମହୋତ୍ସବ ପାଇଁ

ପ୍ରକାଶ : ଧେତ୍, କଳା କାରୁକାର୍ଯ୍ୟର ଅନନ୍ୟ ବୈଭବ ପାଇଁ

ଅଜୟ : ଜୀବନ ଯଦି ଅଶ୍ଳୀଳ, କଳା ବି ଅଶ୍ଳୀଳ । ସ୍କୁଲ, କଲେଜରେ ଯୌନ ଶିକ୍ଷା ଦେବା ନିମନ୍ତେ ଯୋଜନା ଥିବାବେଳେ ଏତେ ପ୍ରୁଡ୍‌ଶ୍ ହେଲେ ଚଳିବ ?

ପ୍ରକାଶ : କିନ୍ତୁ କ'ଣ ଆବଶ୍ୟକତା ଯୌନ ଶିକ୍ଷାର ?

ଅଜୟ : ଯୌନ ଶିକ୍ଷା ଦ୍ୱାରା ଲୋକ ସଂଖ୍ୟା କମି ପାରେ । ବିଶେଷତଃ ନାରୀଧର୍ଷଣ, ନିର୍ଯ୍ୟାତନା ଆଦି କମିଯାଇ ପାରେ

ପ୍ରଶାନ୍ତ : ନିଶ୍ଚିତ ?

ଅଜୟ : ବୋଧେ ନା

ରାଜୁ : ହଁ, କାଲି ଏକ ଦୁଃସ୍ୱପ୍ନ ଦେଖିଲି

ପ୍ରକାଶ : ଦୁଃସ୍ୱପ୍ନ ?

ରାଜୁ : ଏକ ଡେଙ୍ଗାପ୍ଲାନ୍ ରାଜପୁତ୍ର, ଦେବରାଜ ଇନ୍ଦ୍ର ବି ହୋଇ ପାରନ୍ତି--

ପ୍ରଶାନ୍ତ : ଆଚ୍ଛା ।

ରାଜୁ : ସମୁଦ୍ରର ଶାନ୍ତ ତରଙ୍ଗରେ, ହେମାଳ ବାଆରେ ଭାସି ଆସି –

ଅଜୟ : ହୁଁ

ରାଜୁ : ଲିପ୍ତ ହେଲେ ଉନ୍ମତ୍ତ ମୈଥୁନେ

ପ୍ରଶାନ୍ତ : ଶବ ସଙ୍ଗମ ? କ୍ରୌଞ୍ଚ ମୈଥୁନ ?

ଅଜୟ : ଋଷି ପତ୍ନୀଙ୍କ ସହ ଛଦ୍ମବେଶରେ ?

ପ୍ରକାଶ : ନା, ଧୀବର କନ୍ୟା ସହ

ପ୍ରଶାନ୍ତ : ସୁନ୍ଦର, ଅତି ସୁନ୍ଦର

ପ୍ରକାଶ : ବିଭତ୍ସ, ଅଶ୍ଳୀଳ ।

ଅଜୟ : (ପ୍ରକାଶ ପ୍ରତି)—ବୁଝିଲ ବନ୍ଧୁ, ସେଇଟି ହିଁ ତ ଜୀବନର ଚରମ ସତ୍ୟ, ଏକାନ୍ତ ଧ୍ରୁବ ସତ୍ୟ ।

ପ୍ରଶାନ୍ତ : କ'ଣ ?

ଅଜୟ : ପୀନ ପୟୋଧର ପରସର ମର୍ଦ୍ଦନ ଚଞ୍ଚଳ କର ଯୁଗଶାଳୀ ।

ପ୍ରକାଶ : ଗୀତ ଗୋବିନ୍ଦ ନ ବୁଝି, ତା'ର ଅନ୍ତର୍ନିହିତ ଦର୍ଶନ ନ ବୁଝି ଅଯଥା ବାକ୍ ବିତଣ୍ଡା କାହିଁକି ।

ଅଜୟ : ଆମେ ତ ଆକ୍ଷରିକ ଅର୍ଥରେ ହିଁ ସନ୍ତୁଷ୍ଟ ।

ପ୍ରକାଶ : ନା, ଜୀବନକୁ ଏତେ ଉଚ୍ଛୃଙ୍ଖଳ ହେବାକୁ ଦିଅନା । ସମାଜରେ ତାର ପ୍ରଭାବ ପଡିବ ଯେ । ନିଜେ ଜଳି ପୋଡି ହୋଇ ମରିବା ସହ ଅନ୍ୟମାନଙ୍କ ଜୀବନକୁ କାହିଁକି ମାଟିରେ ମିଶାଇ ଦେବ ? ବରଂ ସୁସ୍ଥ ଜୀବନଯାପନର ଆବଶ୍ୟକତା ନିହାତି ବେଶୀ । ବିଶେଷତଃ ସାଂପ୍ରତିକ ପୃଥିବୀରେ ।

ପ୍ରଶାନ୍ତ : ପ୍ରକାଶ ବାବୁ, ତୁମେ ଯାଅ ହିମାଳୟରେ ତପଶ୍ଚର୍ଯ୍ୟା କରିବ । ଏଠାରେ ବଡ଼ ବୈଷ୍ଣବ ସାଜିବାରେ ଆବଶ୍ୟକତା କିଛି ନାହିଁ । କେତେ ଦିନ ବା ବଞ୍ଚିବ ?

ଅଜୟ : ଆଃ ଏତେ ରୋମାଞ୍ଚ, ଏତେ ଉନ୍ମାଦନା, ଏ ପବନରେ, ଏ ମଳୟରେ, ଆଃ—

ରାଜୁ : ପୀନ ପୟୋଧର ପରସର ମର୍ଦ୍ଦନ ଚଞ୍ଚଳ କର ଯୁଗଶାଳୀ ପ୍ରଶାନ୍ତ ବାବୁ ଆଉ ପେଗ୍ ଟିଏ ଦେଉନା ।
(ରାଜୁ ପ୍ରଶାନ୍ତ ମିଶି ହ୍ୱିସ୍କି ପିଇଛନ୍ତି ଏବଂ ଭୂଇଁରେ ନିପତିତ)

ଅଜୟ : ପ୍ରକାଶ ବାବୁ, ଏମିତି ବସି ରହିଛନ୍ତି କାହିଁକି ? ସମୟକୁ ନଷ୍ଟ କରନ୍ତୁ ନାହିଁ । ସମୟ ଆପଣଙ୍କୁ ନଷ୍ଟ କରି ଦେବ ଯେ ।

ପ୍ରକାଶ : ମୁଁ କିଏ—ହୁ ଏମ ଆଇ ? ମଣିଷ ଜୀବନର ଲକ୍ଷ୍ୟ କଣ ? ହ୍ୱାଟ୍ ଇଜ୍ ଦି ଗୋଲ ଅଫ ହ୍ୟୁମାନ୍ ଲାଇଫ୍ ?

ଅଜୟ : ମୁଁ କିଏ ? ମୁଁ କିଏ ?

ପ୍ରକାଶ : ଆପଣ ଜଣେ ମୂର୍ଖ, ସବୁ ମୂର୍ଖଗୁଡିକ ମଣିଷ । ତେଣୁ ଆପଣ ଜଣେ ମଣିଷ ।

ଅଜୟ : ଆପଣ ବି...

ପ୍ରକାଶ : ବ୍ରହ୍ମର୍ଷି । ମୁଁ ବ୍ରହ୍ମା । କିନ୍ତୁ ଅଜ୍ଞାନ, ଅବିଦ୍ୟାର ତମିସ୍ରା ମଧ୍ୟରେ ବାନ୍ଧି ହୋଇଥିବାରୁ ଭଗବତ୍ କୃପାରୁ ବଂଚିତ ।

ଅଜୟ : ମଣିଷ ସୃଷ୍ଟିର ଶ୍ରେଷ୍ଠ ଜୀବ । ବୁଦ୍ଧି, ଜ୍ଞାନ ବିବେକ ବଳରେ ଇତର ପ୍ରାଣୀଠାରୁ ଶ୍ରେଷ୍ଠ ।

ପ୍ରକାଶ : ବୁଦ୍ଧି, ଜ୍ଞାନ, ବିବେକ କିଛି ଆଧୁନିକ ନବ୍ୟ ସଭ୍ୟ ମଣିଷର ଅଛି ?

ଅଜୟ : ବୁଦ୍ଧି ବିବେକ ସବୁ ବେଙ୍ଗର ଅଛି। ସବୁଠି କାମନା, ବାସନା, ସ୍ୱାର୍ଥର ଅସୀମ ସୃଜଭି । କାମ, କ୍ରୋଧ, ଲୋଭ, ମଦ ମାତ୍ସର୍ଯ୍ୟରେ ମଣିଷର ସତ୍ତା ଲୁପ୍ତପ୍ରାୟ । ଦାନବ ସାମ୍ରାଜ୍ୟରେ ବିସ୍ତୃତ ଅପରିସୀମ ।

ପ୍ରକାଶ : ମଣିଷ ଗୋଟିଏ ରୋବଟ୍ ।

ଅଜୟ : ରୋବଟ୍ ବି ମଣିଷ ହୋଇପାରେ ।

ପ୍ରକାଶ : ବୁଝିଲେ ଏ ସ୍ୱାର୍ଥର ମହାଯନ୍ତ୍ରରେ ମଣିଷ ପଶିଆସି କେବଠୁଁ ତଆଁ ମାରି ଦେଲାଣି । ପ୍ରତି ମୁହୂର୍ତ୍ତରେ ବୁଢ଼ା ହୋଇଯିବା ଦେହଟା ଖାଲି ପଡି ରହିଛି ।

ପ୍ରଶାନ୍ତ : ଆପଣ ଯାହା ଭାବନ୍ତୁ ନା କାହିଁକି ମୋତେ କିନ୍ତୁ ଏ ସବୁ ଦୁଇଟାକୁ ବହୁତ ଘୃଣା ଲାଗେ, କ୍ରୋଧ ବି ।

ଅଜୟ : ଈର୍ଷା ନୁହେଁ ତ ?

ପ୍ରକାଶ : ଘୃଣା, କ୍ରୋଧ ।

ଅଜୟ : ଅସହିଷ୍ଣୁତା ବି ହୋଇପାରେ ।

ପ୍ରକାଶ : ସ୍ୱାର୍ଥ, ଦୁର୍ନୀତି, ବ୍ୟଭିଚାରର ଚରମ ସୋପାନ ।

ଅଜୟ : ହଁ, ମଣିଷ ତ ।

ପ୍ରକାଶ : ଧନ ଘଣ୍ଟି ଚୋରି କରି ଆତ୍ମ ପ୍ରଶସ୍ତି ଗାନ କରିବା ଦ୍ୱାରା ଲାଭ କ'ଣ ?

ଅଜୟ : ଯିଏ ଯାହା ଚାହେଁ ତାହା ପାଏ ନାହିଁ । ଯାହା ପାଏ ତାହା ଚାହେଁ ନାହିଁ ।

ପ୍ରକାଶ : ପ୍ରତି ବର୍ଷ କୋଠା ନିର୍ମାଣ । ପ୍ରତି ବର୍ଷ ବିଦେଶ ଭ୍ରମଣ ।

ଅଜୟ : କ୍ଷତି କ'ଣ ?

ପ୍ରକାଶ : କିନ୍ତୁ କାହାର ଏ ଧନ ସମ୍ପତ୍ତି ? କାହାର ଅର୍ଥରେ ଏମାନେ ସବୁ କୋଠା ବାଡ଼ି କରନ୍ତି ? କାମନାର ତାଜ ମହଲକୁ ଅଧିକ ରଂଗୀନ କରନ୍ତି ?

ଅଜୟ : ତୁମର, ଆମର, ସମସ୍ତଙ୍କର ।

ପ୍ରକାଶ : ଗରିବ କୃଷକର, ମଲମୁଣ୍ଡିଆ ଶ୍ରମିକର ।

ଅଜୟ : ହୋଇପାରେ ।

ପ୍ରକାଶ : ଚୋରି, ଡକାୟତି, ଲୁଟ ତସ୍କର ଦବାଲୋକରେ ।

ଅଜୟ : କିନ୍ତୁ ସମାଜ ତ ସ୍ୱୀକୃତି ଦେଇଛି ।

ପ୍ରକାଶ : ହଁ ସମାଜ ସ୍ୱୀକୃତି ଦେଇଛି ।

ଅଜୟ : ହୋଇପାରେ ନ ହୋଇପାରେ ବି ।

ପ୍ରକାଶ : ନା ଏହା ସ୍ୱତଃସିଦ୍ଧ । Property is theft । ଧନ ସମ୍ପତ୍ତି ଆହରଣ ପାଇଁ ଏକମାତ୍ର ପନ୍ଥା ହେଉଛି ଚୋରି, ଶୋଷଣ, ଲୁଣ୍ଠନ ।

ଅଜୟ : ତେବେ ମୁକ୍ତିର ଉପାୟ ।

ପ୍ରକାଶ : ଏସବୁ ବଦଳାଇବା ଆବଶ୍ୟକ ।

ଅଜୟ : ହଁ କେତେ ଧର୍ମ, କେତେ ବାଦ୍, କେତେ ଇଜମ୍ ସଂସାରକୁ ଆସି ପୁଣି ଲୋପ ପାଇଛନ୍ତି । କମ୍ୟୁନିଜମ୍, ଫାସିଜମ୍, ନକ୍ସାଲିଜମ୍, ହିପ୍ପିଜମ୍ । କାହିଁ କୁଆଡେ ସବୁ ମିଳାଇ ଗଲେଣି ।

ପ୍ରକାଶ : ଚେଙ୍ଗିଜ୍ ଖାଁ, ନେପୋଲିଅନ୍, ହିଟ୍‌ଲର, ଷ୍ଟାଲିନ୍ ।

ଅଜୟ : ଅଶୋକ, ଆକ୍‌ବର, ଆଉରଙ୍ଗଜେବ୍, ସଂଗ୍ରାମ ସିଂ ।

ପ୍ରକାଶ : ଅଗଣିତ ଜନତା, ଅକଳନ ପଶୁପକ୍ଷୀ ।

ଅଜୟ : କେହି ରହି ନାହିଁ, ରହିବେ ନାହିଁଟି ଭବରଙ୍ଗ ଭୂମି ତଳେ,
ସବେ ନିଜ ନିଜ ଅଭିନୟ ସାରି ବାହୁଡିବେ କାଳବଳେ ।

ପ୍ରକାଶ : କିନ୍ତୁ ଏ ଗଡ୍‌ଡାଳିକା ପ୍ରବାହ କ'ଣ ଚାଲି ରହିଥିବ, ଏ ନିର୍ଯ୍ୟାତନା, ନିଷ୍ପୀଡ଼ନର କ'ଣ ଅନ୍ତ ନାହିଁ ? ପୁଞ୍ଜିପତି ତାର ପୁଞ୍ଜି ବଢ଼ାଇ ଚାଲିଥିବ, ଅନ୍ୟାୟ, ଅତ୍ୟାଚାର ଦୁର୍ନୀତି ବ ସବୁ ସୀମା ଲଙ୍ଘନ କରି ଚାଲିଥିବେ । ଏପରି କେତେ ବର୍ଷ ଚାଲିବ ଭଗବାନ୍ । ଏପରି କେତେ ବର୍ଷ ଚାଲି ରହିଥିବ ?

ଅଜୟ : ଭଗବାନ କ'ଣ ଏହାର ଉତ୍ତର ଦେଇ ପାରିବେ ?
ଯାହା କିଛି ଉତ୍ତର ମଣିଷ ଦେବ । ସୃଷ୍ଟି ପାଳନ, ସଂହାର ସବୁ ମଣିଷ କରିବ— ଠାକୁର ନୁହେଁ ।

ପ୍ରକାଶ : କିନ୍ତୁ ମଣିଷ ସମାଜର କ'ଣ ଆଦର୍ଶ, କ'ଣ ଦିଗ୍‌ଦର୍ଶନ ଅଛି ? ହିଂସା, ଦ୍ୱେଷ, ଅନ୍ତର୍ଦ୍ୱନ୍ଦ୍ୱ, ଯୁଦ୍ଧରେ ମଣିଷ ବ୍ୟସ୍ତ । ସାମୂହିକ ଉନ୍ନତି ପାଇଁ ସମୟ କାହିଁ ?

ଅଜୟ : କ'ଣ ସତ୍ୟଯୁଗ ଆସୁଛି ପରା, କଳିଯୁଗ ଏଥର ଶେଷ ହୋଇଯିବ ମାଳିକା କହୁଛି ।

ପ୍ରକାଶ : କିନ୍ତୁ କଳିଯୁଗର ଅନ୍ତ କାହିଁ ? ଏକ ପରମାଣୁ ଯୁଦ୍ଧ କିମ୍ବା ଅଭୂତପୂର୍ବ ପ୍ରାକୃତିକ ବିପର୍ଯ୍ୟୟ ନୋହିଲେ କଳିଯୁଗ କ'ଣ ଏତେ ଶୀଘ୍ର ଶେଷ ହୋଇଯିବ ?

ଅଜୟ : ଏକ ବିରାଟ ଧୂମକେତୁ କୁଆଡ଼େ ତୀବ୍ର ବେଗରେ ପୃଥିବୀ ପୃଷ୍ଠକୁ ମାଡି ଆସୁଛି, ଯଦି ଧକ୍‌କା ଖାଇଯାଏ ନା

ପ୍ରକାଶ : ସମସ୍ତଙ୍କ ଅଭିନୟ ଏ ରଙ୍ଗମଞ୍ଚରେ ଏକାବେଳକେ ଶେଷ ହୋଇଯିବ ।

ଅଜୟ : ସମସ୍ତଙ୍କ ଅଭିନୟ ଏ ରଙ୍ଗମଞ୍ଚରେ ଏକାବେଳକେ ଶେଷ ହୋଇଯିବ ?

ପ୍ରକାଶ : ସେ ମୁକ୍ତିର ସନ୍ଧାନ ପାଇଁ କେତେ ବର୍ଷ ଅପେକ୍ଷା କରିବାକୁ ହେବ ? କେତେ ଶତ ବର୍ଷ ?

ଅଜୟ : ସେ ତ ପ୍ରଶ୍ନବାଚୀ।

ପ୍ରକାଶ : ଆଜ ସହ୍ୟ କରି ହେଉ ନାହିଁ । ଅସହ୍ୟ ଯନ୍ତ୍ରଣା । ଅନନ୍ତ ସଂଗ୍ରାମ ଦ୍ୱାରା ଜର୍ଜରିତ ।

ଅଜୟ : ସବୁ କିଛି ବୁଝେଇଲା, ମଣିଷକୁ ।

ପ୍ରକାଶ : କଣ ?

ଅଜୟ : ଗାନ୍ଧୀଙ୍କର ରାମରାଜ୍ୟ ।
ମାର୍କସଙ୍କର ଷ୍ଟେଟଲେସ୍ ସୋସାଇଟି ।
ବେର୍ଟ୍ରାଣ୍ଡ ରସେଲଙ୍କର ୟୁନିଭେରସାଲ୍ ଗଭର୍ଣ୍ଣମେଣ୍ଟ ।

ପ୍ରକାଶ : ଆଜି ଫିଲସଫର କିଂଗ୍‌ସ୍ ?

ଅଜୟ : ପ୍ଲାଟୋଙ୍କର ଫିଲସଫର କିଂଗ୍ । ସବୁ ଅବାସ୍ତବ, ଭିତ୍ତିହୀନ, ଅମୂଳକ, କଳ୍ପନାପ୍ରସୂତ ।

ପ୍ରକାଶ : ମୋର କ'ଣ ଇଚ୍ଛା ହୁଏ ଜାଣନ୍ତି, ଏ ରାଜ୍ୟ, ପ୍ରଶାନ୍ତ ସବୁ ଅପଦାର୍ଥଗୁଡ଼ାକୁ ଏ ପୃଥିବୀରୁ ଶୀଘ୍ର ବିଦାୟ କରିବା ଉଚିତ ।

ଅଜୟ : A mere wishful thinking.
କିଛି ଆରମ୍ଭ କରିବା ମୁସ୍କିଲ୍, ଶେଷ କରିବା ତ ଆହୁରି କଠିନ । ସବୁ କିଛି ଗତାନୁଗତିକ, ଟ୍ରାଡିସ୍‌ନାଲ୍ ।

ପ୍ରକାଶ : ଭଗବାନଙ୍କ କ'ଣ ପୁଣି ଆବିର୍ଭାବ ପାଇଁ ସମୟ ହୋଇ ନାହିଁ ? ଯୀଶୁଖ୍ରୀଷ୍ଟଙ୍କ ପୁନରୁତ୍‌ଥାନ ପାଇଁ ସାଂସ୍କୃତିକ ସମୟ କ'ଣ ପରିପକ୍ୱ ନୁହେଁ ?

The best lacks all conviction,
While the worst are full of passionate intensity.

ଅଜୟ : ତେବେ ଉପାୟ ?

ପ୍ରକାଶ : ପୁଣି ଜଣେ ଚୈତନ୍ୟ, ପୁଣି ଜଣେ ମହମ୍ମଦ୍, ପୁଣି ଜଣେ
ସ୍ଵୈରବୃତ୍ତୀଶ କେବେ ଜନ୍ମ, କେବେ ପୁଣି ଆସିବ ?
କେତେ ଦିନ ଏ ପ୍ରତୀକ୍ଷା ?
କେତେଦିନ ଆଉ କେତେ ଦିନ ? (Pause)

\+ + +

ଅଜୟ : ପ୍ରତୀକ୍ଷାର, ଏ ପ୍ରତୀକ୍ଷାର ସମାପ୍ତି ନାହିଁ । ଜୀବନର ସମାପ୍ତି ନାହିଁ
କମ୍ବା ଏ ମୃତ୍ୟୁର ସମାପ୍ତି ନାହିଁ । ସବୁ କିଛି ଗତାନୁଗତିକ,
ଟ୍ରାଡିସନାଲ୍ ।

ପ୍ରକାଶ : ଏ ଦୁନିଆରେ ବର୍ତ୍ତମାନ ଶୌର୍ଯ୍ୟ, ବୀର୍ଯ୍ୟ, ଗୌରବର ସ୍ଥାନ
ନାହିଁ ।
ସାହସ ପୌରୁଷ ପ୍ରତିପାଦନ ପାଇଁ କ୍ଷେତ୍ର ନାହିଁ ।
ମଣିଷ ଦିନକୁ ଦିନ ନିହାତି କ୍ଷୁଦ୍ର, ନିହାତି ହୀନ୍, କେବଳ
ସ୍ୱାର୍ଥାନ୍ୱେଷୀ ହୋଇଯାଉଛି । ବୋଧେ ଆଉ କିଛି କହିବା
ପାଇଁ ନାହିଁ ।
କିଛି କରିବା ପାଇଁ ନାହିଁ ।
ସବୁଟି କୁହେଳିକା ବେ.ରହମ୍

ଅଜୟ : ଆଚ୍ଛା ଏ ରାଜ୍ ପ୍ରଶାନ୍ତ ଦୁଇଟା ଏମିତି ପଡ଼ିରହିଛନ୍ତି କାହିଁକି ?
କେଣି ଡ୍ରିଙ୍କ କରି ଦେଇଛନ୍ତି ବୋଧେ (ପାଖକୁ ଯାଇ)
ରାଜ୍—ପ୍ରଶାନ୍ତ—ରାଜ୍—ପ୍ରଶାନ୍ତ
ନା—ହୋପ୍‌ଲେସ୍—ବିଲ୍‌କୁଲ୍ ହୋପ୍‌ଲେସ୍ ।

ପ୍ରକାଶ : ସେମାନଙ୍କ ବଞ୍ଚିବା ପାଇଁ ଆଉ ସଂଗ୍ରାମର ଆବଶ୍ୟକତା ନାହିଁ ।
ଅର୍ଥ—ଅସୁମାରି ଅର୍ଥ । ମାନେ, ସମାଜରେ ବଞ୍ଚିବା ପାଇଁ
ଯୋଗ୍ୟତମ ବ୍ୟକ୍ତି । ସମ୍ପତ୍ତି, ଅଚଳା ଚଳ ସମ୍ପତ୍ତି । ଧନ,
ଦୌଲତ, ପ୍ରାଚୁର୍ଯ୍ୟ, ପ୍ରତିଷ୍ଠା

ଅଜୟ : ପ୍ରତିପତ୍ତି, କାର୍, କୋଠା, ବ୍ୟାଙ୍କ ବ୍ୟାଲାନ୍‌ସ ।

ପ୍ରକାଶ : ସବୁ ସ୍କେଚ । ବିଭାଗୀୟ କମରେ ଉତ୍ସାହିତ ।
ଆମେ କଳ୍ପ ସ୍କେଚ କରି ପାରୁନା ବୋଲି କମ୍ ଉଦ୍ୟମ ।

ଅଜୟ : ଚେଷ୍ଟା କରୁ ନାହାନ୍ତି ?

ପ୍ରକାଶ : ଭୟ ଲାଗୁଛି, ଛାତି ଧଡ଼୍ ଧଡ଼୍ ହୋଇଯାଉଛି ।

ଅଜୟ : ଚେଷ୍ଟା କରୁଛନ୍ତି ?

ପ୍ରକାଶ : ନା କେବଳ ଚିନ୍ତା କରୁଛି—

ଅଜୟ : ସେଥିପାଇଁ ଡ଼ର ଲାଗୁଛି । କେବଳ ଚିନ୍ତା କଲେ, କ୍ଲାସରେ ପାଠ ପଢ଼ାଇଲେ କିମ୍ବା ବକ୍ତୃତା ଦେଲେ ସମସ୍ୟାର ସମାଧାନ ହୋଇପିବ ?
ଉପାୟ ବାହାର କରନ୍ତୁ ।

ପ୍ରକାଶ : ନା ମୋ ଦେଇ ହୋଇପାରିବ ନାହିଁ । ମୁଁ ଜଣେ ସମ୍ଭ୍ରାନ୍ତ, ଶିକ୍ଷିତ ଭଦ୍ର । ମୁଁ ଜଣେ ଶିକ୍ଷକ । ମୋର ଏକ ନିର୍ଦ୍ଦିଷ୍ଟ ସମ୍ମାନ ଅଛି ।

ଅଜୟ : ଛାଡ଼ନ୍ତୁ, ଆମର ସେ ମୁଖାଗୁଡ଼ିକ କିଛି ସମୟ ପାଇଁ ବାହାର କରିଦେଲେ ଚଳିବନି ?

ପ୍ରକାଶ : ପୁଣି କିଛି ନୂଆ ମୁଖା ପିନ୍ଧିବାକୁ ପଡ଼ିପାରେ ।

ଅଜୟ : ଦେଖୁଛନ୍ତି, ଏ ଲୋକ କିପରି ଦୁଇଟା କପଡ଼ା ମୁର୍ଦ୍ଦାର ଉପରେ ପକାଇଛନ୍ତି ।

ପ୍ରକାଶ : ହଁ ।

ଅଜୟ : ଜାଣନ୍ତି ତାଙ୍କ ପକେଟରେ ହଜାର ହଜାର ଟଙ୍କା ଥାଇପାରେ ।

ପ୍ରକାଶ : ହଁ, ପକେଟ୍‌ଗୁଡ଼ିକ ତ ଉଚ୍ଚା ଉଚ୍ଚା ଦିଶୁଛି ।

ଅଜୟ : ଜାଣନ୍ତି ସେମାନେ କେତେ ଦାମୀ ସୁଟ୍, ଓ୍ୱାଚ୍ ସବୁ ପିନ୍ଧିଛନ୍ତି ।

ପ୍ରକାଶ : ହଁ, ସବୁ ଇଂପୋର୍ଟେଡ଼୍ ସବୁ କିଛି ଫରେନ ।

ଅଜୟ : ଚାଲନ୍ତୁ ସେ ସବୁ ନେଇପିବା ।

ପ୍ରକାଶ : ନା, ଡର ଲାଗୁଛି ।

ଅଜୟ : ଡର ଲାଗୁଛି କାହିଁକି ?

ପ୍ରକାଶ : କିଏ ଯଦି ଦେଖି ନିଏ

ଅଜୟ : ଯାଃ, କିଏ ବା ଦେଖିବ ?

ପ୍ରକାଶ : ଯଦି ସେମାନେ ଉଠି ପଡ଼ନ୍ତି

ଅଜୟ : ପୁଣି ଶୁଆଇଁ ଦେବା ।

ପ୍ରକାଶ : କପରି ?

ଅଜୟ : ଆପଣ ବଳେ ଜାଣି ଯିବେନ ।

ପ୍ରକାଶ : କିନ୍ତୁ ମୁଁ ଚୋରି କେବେ କରିନି ଯେ । ଏକ ଧର୍ତ୍ତବ୍ୟ ଅପରାଧ ।

ଅଜୟ : ଛାଡ଼ନ୍ତୁ, ସବୁ ବିଷୟରେ ଏକ ଫାଷ୍ଟ୍ ଟାଇମ୍ ଥାଏ ।

ପ୍ରକାଶ : ଆଚ୍ଛା

(ଅଜୟ, ପ୍ରକାଶ ଧୀରେ ଧୀରେ ଯାଇ ରଞ୍ଜୁ ଓ ପ୍ରଶାନ୍ତର ପକେଟ ଖୋଜି ଟଙ୍କା ବାହାର କରନ୍ତି । ଫ୍ଲାଟ୍, ଟଙ୍କା ବାହାର କଲାବେଳେ ବିଶାଳକାୟ ବ୍ୟକ୍ତିଟି ରଞ୍ଜୁ ଓ ପ୍ରଶାନ୍ତର ପ୍ରଦକ୍ଷିଣ କରି ପୁଣି ଫେରିଯାଇଛି ପଥର ପଛକୁ । ଉପରେ·ଅଜୟ, ପ୍ରକାଶ ଫ୍ରିଜ । ରଞ୍ଜୁ ଓ ପ୍ରଶାନ୍ତ ଧୀରେ ଧୀରେ ଦଣ୍ଡାୟମାନ ।)

ରଞ୍ଜୁ : ବହୁତ ସମୟ ଶୋଇଗଲେ ବୋଧେ ।

ପ୍ରଶାନ୍ତ : ନା ସ୍ୱପ୍ନ ଦେଖୁଥିଲେ । କି ସୁନ୍ଦର ସ୍ୱପ୍ନ !

ରଞ୍ଜୁ : ସ୍ୱପ୍ନ ନା ସାମ୍ପେନ୍ ହଣ ?

ପ୍ରଶାନ୍ତ : ସାଂପେନ୍, ହଁ ସାଂପେନ୍ । କିନ୍ତୁ ବୁଝିଲେ ରଞ୍ଜୁ ବାବୁ, ସାଂପେନ୍ ସହ ସାଙ୍ଗ ନୋହିଲେ କ'ଣ ଜମେ ? ଆଜକାଲିର ଯନ୍ତ୍ର ସଭ୍ୟତାରେ ରସଗ୍ରାହୀଙ୍କର ଅଭାବ ବହୁତ । ନୃତ୍ୟ ଗୀତର ଆଦର ବି ଯଥେଷ୍ଟ କମି ଯାଉଛି । ନ ଯା ରାଧିକା ଏକା ଏକା

(ନାଚ ପକାଉଛି)

ସୁନ୍ଦର, ବହୁତ ସୁନ୍ଦର । କିନ୍ତୁ କେତେ ଜଣ ବୁଝନ୍ତି ଏହି କ୍ଲାସିକାଲ୍ ଛନ୍ଦ ? କେତେ ଜଣ ବୁଝନ୍ତି ସଙ୍ଗୀତର ମୂର୍ଚ୍ଛନା ? ବିଶେଷତଃ ଏ ବୁଦ୍ଧିଜୀବୀମାନେ ସମାଜର ବଡ଼ ପଣ୍ଡାମାନେ —

ରଞ୍ଜୁ : ହଁ କେବଳ ଆପଣ ହିଁ ଯାହା କିଛି ବୁଝନ୍ତି । ବୁଝିଲେ ଯେ ନ ଯା ରାଧିକା ଛାଡ଼ନ୍ତୁ । ବର୍ତ୍ତମାନ ରମ୍ବୋ, ଜାଜ୍ ଡିସ୍କୋର

ଯୁଗ । ଡିସ୍କୋ ଡ୍ୟାନ୍ସ, ଡିସ୍କୋ ରେଦମ୍, ଡିସ୍କୋ, ଡିଜନ୍-ସବୁ କିଛି ଡିସ୍କୋ । ମାର୍ଭେଲସ୍ ।

ପ୍ରଶାନ୍ତ : ଆପଣଙ୍କ ପରି ଶାହେନ୍ ଶାହାମାନଙ୍କ ପାଇଁ ସବୁ କିଛି —ମାର୍ଭେଲସ୍ ।

ରାଜୁ : ବୁଝିଲେ, ଏ ହେଲା କମ୍ପ୍ୟୁଟର ଯୁଗ, ଯନ୍ତ୍ର ମାନବ । ଯନ୍ତ୍ର ଦାନବର ଯୁଗ । ଏଇନେ ଜୟଦେବ୍‌ଙ୍କ ଦେଖି ନବକାଳିକା ବକାଳିକା ମାଳିକା' କମ୍ବା କବିସୂର୍ଯ୍ୟଙ୍କ ଚମ୍ପୁ ଗାନ କଲେ ଚଳିବ ? ଆପଣ ଅପର୍ଯ୍ୟାପ୍ତ ଧନ ସମ୍ପତ୍ତିର ମାଲିକ ହୋଇ ପାରନ୍ତି କିନ୍ତୁ ତା'ର ସଦ୍ ବ୍ୟବହାର ପାଇଁ ତାଲିମ ନେବା ଆବଶ୍ୟକ । ଆଧୁନିକ ଯୁଗରେ କେବଳ ଧନ ସମ୍ପତ୍ତି ସାଇତି ରଖି କୁବେର ପାଲଟିବାରେ ଅର୍ଥକ କିଛି ନାହିଁ । ଜୀବନକୁ ଉପଭୋଗ କରନ୍ତୁ, ଦୁନିଆକୁ ଉପଭୋଗ କରନ୍ତୁ ।

ପ୍ରଶାନ୍ତ : ଆପଣ ଆଜି ମତେ ଶିକ୍ଷା ନ ଦେଲେ ବି ଚଳିବ । ଧନ ସମ୍ପତ୍ତିର ରକ୍ଷଣାବେକ୍ଷଣ ଓ ଉପଯୋଗ ବିଷୟରେ ଆପଣଙ୍କ କ'ଣ ବା ଧାରଣା ଅଛି ? ଆପଣଙ୍କ ସମ୍ପତ୍ତି ଝାଳ ବୁହା ଧନ ନୁହେ ତ ।

ରାଜୁ : ଛାଡନ୍ତୁ, ବୃଥା ଝଗଡ଼ାରେ ଲାଭ କ'ଣ ? ବଞ୍ଚିବାକୁ ହେଲେ ସୁଖ ସାଙ୍ଗ ହିଁ ଆବଶ୍ୟକ, ଓମର ଖାୟାମ୍ କହି ନାହାନ୍ତି—

ପ୍ରଶାନ୍ତ : ଓମର ଖାୟାମ ଛାଡନ୍ତୁ, ଭଗବାନ ରଜନୀଶ୍ କିନ୍ତୁ ଲେଖି ଯାଇଛନ୍ତି—From sex to superconsciousness.

ରାଜୁ : ମୋର ଏକ ବେତାଳ ଦରକାର ଯେ କି ରମ୍ଭା ମେନକାଙ୍କୁ ଅନାୟାସରେ ପହଞ୍ଚାଇ ପାରନ୍ତା ଆଖି ପିଛୁଳାକେ କମ୍ବା କ୍ଲବ ପାର୍ଟି—

ପ୍ରଶାନ୍ତ : ଯାଃ ସେଗୁଡ଼ା ଯେ କେବଳ ମର ସଡି ନର୍କରେ ଜନ୍ମିଛନ୍ତି— ଆମକୁ ଜଅଳା ମାଲ୍ ଦରକାର ନା

ରାଜୁ : ନର୍କ? କୁମ୍ଭୀପାକ, ରୌରବ ନର୍କ?

ପ୍ରଶାନ୍ତ : ହଁ, କୁମ୍ଭୀପାକ, ରୌରବ ନର୍କ ।

ରାଜୁ : ସତରେ ସେମାନେ ଜଳୁଛନ୍ତି? ଆମେ ବି ସବୁ ସେଠାରେ ଜଳିଯିବା?

ପ୍ରଶାନ୍ତ : ହଁ ବୋଧେ ସତରେ ସେମିତି ଜଳିଯିବା ।

ରାଜୁ : କିନ୍ତୁ ମଲା ପରେ ତ ଏ ଶରୀର ଏ ହାଡ଼, ଗୋଡ଼, ମୁଣ୍ଡ, ଇନ୍ଦ୍ରିୟ ସବୁ ଜଳି ପୋଡି ପାଉଁଶ ହୋଇଯିବ ଆଉ କ'ଣ ରହିବ ଯେ ପୁଣି ଜଳିଯିବ?

ପ୍ରଶାନ୍ତ : ଆତ୍ମା, ଅମର, ଅକ୍ଷୟ, ଅବିନଶ୍ୱର ।

ରାଜୁ : ଅତ୍ମା ବୋଲି କ'ଣ କିଛି ଅଛି? ସବୁ ଆଡ଼େ ଲାଇଟ୍ ଲାଗିଯିବାରୁ ଭୂତ ଗୁଡ଼ା ଉଡ଼ି ଯିବା ପରି, ଆଜିକାଲି ଏ ପାପର ସାମ୍ରାଜ୍ୟରେ ଅତ୍ମାଗୁଡ଼ା କେଉଁଠି ଉଭାଁ ମାରିଲେଣି । ଆମର ଯେ ହେଲେନ୍ କମ୍ବା କ୍ଲିଓପାଟ୍ରା ଦରକାର ।

ପ୍ରଶାନ୍ତ : କିନ୍ତୁ ଡକ୍ଟର ଫଷ୍ଟସ୍‌ଙ୍କ ଜ୍ଞାନ, ସାଧନା ବି ଦରକାର ।

ରାଜୁ : (ହସି) ଫଷ୍ଟସ୍? ଫଷ୍ଟସ୍ ଇଜ୍ ଦି ଡେଭିଲ୍ । ଆମ ମନ ହିଁ ଡକ୍ଟର ଫଷ୍ଟସ୍ । ଇନ୍ଦ୍ରିୟ ହିଁ ବେତାଳ ।

ପ୍ରଶାନ୍ତ : କିନ୍ତୁ ହେଲେନ୍ କ୍ଲିଓପାଟ୍ରା?

ରାଜୁ : ଧେତ୍, ହେଲେନ୍ କ୍ଲିଓପାଟ୍ରା ପ୍ରତି ବସ୍ତି, ପ୍ରତି ସହରରେ । ଅର୍ଥ ବିନିମୟରେ ଅନେକ ହେଲେନ୍, ଅନେକ କ୍ଲିଓପାଟ୍ରା ସହଜରେ ଉଡ଼ି ଆସିବେ ସୁଦୂର ହଲିଉଡ଼ କିମ୍ବା ବମ୍ବେ ନଗରୀରୁ । ଫଷ୍ଟସ୍‌ଙ୍କ ଜ୍ଞାନର ଆବଶ୍ୟକତା ନାହିଁ । ଅନେକ ମେଫିଷ୍ଟୋଫିଲସ୍ ପ୍ରତି ମୁହୂର୍ତ୍ତରେ ଉଙ୍କି ମାରୁଛନ୍ତି ଅର୍ଥ ଲାଳସାରେ । କଳ୍ପନା ମାତ୍ରକେ ବହୁତ ହେଲେନ୍ କ୍ଲିଓପାଟ୍ରା ଦଉଡ଼ି ଆସିବେ ।

ରାଜୁ : କିନ୍ତୁ ହେ ଅଜୟ, ପ୍ରକାଶ ଦୁଇଟା କୁଆଡେ ଗଲେ ?

ପ୍ରଶାନ୍ତ : କେଜାଣି ସ୍ୱପ୍ନ ଦେଖୁଥିବେ କିମ୍ବା ଲମ୍ବା ଲମ୍ବା ଭାଷଣ ଦେଉଥିବେ । ଅପଦାର୍ଥ ।

ରାଜୁ : ଏମାନଙ୍କର ସବୁ ବଞ୍ଚିବା ଆବଶ୍ୟକତା ଅଛି ନା ?

ପ୍ରଶାନ୍ତ : ନିଶ୍ଚୟ, ପୋଚର ଗଛି, ଗୋରୁ, ବୃକ୍ଷଲତା, କୀଟପତଙ୍ଗର ବଞ୍ଚିବା ଅଧିକାର ରହିଛି ।

ରାଜୁ : ଏମାନଙ୍କର ଦେଇ କିଛି ହୋଇପାରିବ ନାହିଁ ।

ପ୍ରଶାନ୍ତ : ମୋର କ'ଣ ମନେ ହୁଏ ଜାଣନ୍ତି ।

ରାଜୁ : କଣ ?

ପ୍ରଶାନ୍ତ : ସେ ଦୁଇଟାକୁ ଦୂରମୂଳ ଶେଷ କରିଦେଲେ ବୋଧେ ଭଲ ହୁଅନ୍ତା ।

ରାଜୁ : ସୁନ୍ଦର ଚିନ୍ତା ଧାରା । ଏଥିପାଇଁ ଆପଣଙ୍କୁ ନୋବେଲ୍ ପୁରସ୍କାର ଦେବା ଉଚିତ ।

ପ୍ରଶାନ୍ତ : ନା ଯୋକ୍ ନୁହଁ, ଠିକେ ସିରିଅସଲି ଚିନ୍ତା କରନ୍ତୁ ।

ରାଜୁ : କିନ୍ତୁ ସେମାନଙ୍କ ଦୋଷ କ'ଣ ?

ପ୍ରଶାନ୍ତ : ସ୍ୱାର୍ଥାନ୍ୱେଷୀ, ଅସନ୍ତୁଷ୍ଟ । ହିଂସା, ଦ୍ୱେଷ, ପରଶ୍ରୀ କାତରତାରେ ଭରପୂର ।

ରାଜୁ : ହିପୋକ୍ରେଟସ୍ ।

ପ୍ରଶାନ୍ତ : ହିପୋକ୍ରେଟ୍ସ୍ ।

ରାଜୁ : କିନ୍ତୁ ଏ ଜଗତ ସାରା ହିପୋକ୍ରେଟ୍ସ୍‌ରେ ପରିପୂର୍ଣ୍ଣ । ସାପ୍ରତିକ ପରିବର୍ତ୍ତନର ଲକ୍ଷଣ କ'ଣ ଜାଣନ୍ତି ? ମଣିଷ ପୁଣି ତା ନୁବାବସ୍ଥାକୁ ଫେରିଯାଉଛନ୍ତି ମଣିଷ ମାଙ୍କଡ଼ ଅବସ୍ଥାକୁ ଫେରି-

ଯିବ—ସେଠାରୁ ପୁଣି ଡନୋସାର, ପଶୁ ପକ୍ଷୀ, ଗୁଳ୍ମ, ତୃଣ, ଅମିବା, ହାଇଡ୍ରା—

ପ୍ରଶାନ୍ତ : ସୁନ୍ଦର, ସୁନ୍ଦର ଏ ଯୁକ୍ତି । କିନ୍ତୁ ସେ ଅଜୟ, ପ୍ରକାଶ ଦୁଇଟା—

ରାଜୁ : (ଚାଲନ୍ତୁ ଟିକ୍‌ନଖ୍ ଖୋଜିବା ।)

ଲଣ୍ଠନ ଜଳାଇ ଖୋଜିବା ସଙ୍କେଁଟିଏଙ୍କ ପରି (ଖୋଜିଛନ୍ତି ।)

ପ୍ରଶାନ୍ତ : ଏ ପରି ମୂର୍ଦ୍ଧାର ପରି ଏଠାରେ ପଡିଛନ୍ତି ।

ରାଜୁ : ଅଜୟ ବାବୁ...ପ୍ରକାଶ ବାବୁ ।

ପ୍ରଶାନ୍ତ : ଏଗୁଡ଼ା ବୋଧେ ସ୍ୱପ୍ନ ଦେଖୁଛନ୍ତି । ନିଦ୍ରା ଓ ମୃତ୍ୟୁ ମଧ୍ୟରେ ପାର୍ଥକ୍ୟ ବହୁତ କମ୍—ଯାହା ତ ନିଃଶ୍ୱାସ ପ୍ରଶ୍ୱାସ ଟିକଏ—

ରାଜୁ : ପ୍ରକାଶ—ଅଜୟ ।
(ଗୋଡ ଦୁଇଟା ଧରି ଟାଣିଛୁ)
ନା—ହୋପଲେସ୍ ବିଲ୍‌କୁଲ ହୋପଲେସ୍,
ବୋଧେ ଡ୍ରିଙ୍କ ବେଶି କରି ଦେଇଛନ୍ତି ।

ପ୍ରଶାନ୍ତ : ପଥର ଦୁଇଟା ଆଣି ଏମାନଙ୍କ ଉପରେ ଛାଡ଼ ଦେଲେ କେମିତି ହୁଅନ୍ତା ।

ରାଜୁ : ପରିତ୍ରାଣ ପାଇଯିବେ ।

ପ୍ରଶାନ୍ତ : ପୋକ୍ ନୁହେଁ, ଥିଙ୍କ ସିରିୟସଲି ।

ରାଜୁ : କିନ୍ତୁ କାହିଁକି ?

ପ୍ରଶାନ୍ତ : ଏକ ନୂଆ ଆଡ୍‌ଭେଞ୍ଚର

ରାଜୁ : ପୋଲିସ୍ ବାନ୍ଧି ନେବେ ଯେ ।

ପ୍ରଶାନ୍ତ : ଧେତ୍ ପୋଲିସ୍ ବାନ୍ଧି ନେବେ ? ଆପଣ କ'ଣ ଊନବିଂଶ ଶତାବ୍ଦୀରେ ଅଛନ୍ତି ରାଜୁବାବୁ ? ଆମେ ପରା ଏକ ବିଂଶଶତାବ୍ଦୀକୁ

ଦାଉଡ଼ା ଆରମ୍ଭ କରି ଦେଇଛନ୍ତି । ଗୋଲପସ୍‌କୁ ଆପଣ ବି ଭୟ ଅଛି

ରାଜୁ : କାହିଁ ପାପ ହେବନି ?

ପ୍ରଶାନ୍ତ : ପାପ ପୁଣ୍ୟ ସବୁ ଭଗଲେଟିଭ୍ ଟର୍ମ । ମନର ବିଭ୍ରାନ୍ତି ।

ରାଜୁ : ଆଉ ନର୍କ—କୁମ୍ଭୀପାକ ରୌରବ ନର୍କ

ପ୍ରଶାନ୍ତ : ଚ୍ଚେଟ ପିଲାଂକୁ ଡରାଇବା ପାଇଁ ଅଜା ବୁଢ଼ାଙ୍କ କାହାଣୀ

ରାଜୁ : ତଥାପି କିଏ ଯଦି ଦେଖି ଦିଏ ନା .

ପ୍ରଶାନ୍ତ : ଧେତ୍ କିଏ ବା ଏଠାରେ ଅଛି—
(ଦୁଇଟି ପଥର ଉଠାଇ ଆଣିଛନ୍ତି । ଅଜୟ ପ୍ରକାଶ ଉପରେ ପକାଇବା ପୂର୍ବରୁ ଉକ୍ତ ଶଗାଳକାୟ ବ୍ୟକ୍ତି ଜଣକ ସମସ୍ତଂକୁ ପ୍ରଦକ୍ଷିଣ କରି ଅନ୍ତର୍ଦ୍ଧାନ । ରାଜୁ, ପ୍ରଶାନ୍ତ ପଥର ପକାଇ ଦେଇଛନ୍ତି ଓ ଆର୍ତ୍ତନାଦ କରିଛନ୍ତି । ଅଜୟ, ପ୍ରକାଶ ଉଠି ବସିଛନ୍ତି ।)

ଅଜୟ : ଏଁ, କଥା କ'ଣ ?

ପ୍ରଶାନ୍ତ : ସେ ଦ୍ରୌପଦୀ—

ପ୍ରକାଶ : ଦ୍ରୌପଦୀ ?

ରାଜୁ : ନା, ନା ହନୁମାନ—

ଅଜୟ : ହନୁମାନ ?

ପ୍ରଶାନ୍ତ : ନା, ଛେଳି ନା ସୁନାମୃଗ ଆମେ ଯାହାକୁ ବାନ୍ଧି ଆଣିଥିଲେ—.

ଅଜୟ : ହଁ, ମୁଁ ତ ହଠାତ୍ ଦେଖି ଅଚେତ ହୋଇଗଲି—

ରାଜୁ : ମୋତେ ଖାଇ ଦେବା ପାଇଁ ପରି ଦଉଡ଼ି ଆସିଲା । ବାପ୍‌ରେ, ସେଇଁ ଶଗଡ ଚକ ପରି ଆଖି—ମୁଣ୍ଡଟା ତ ଆକାଶକୁ ଲାଗିଛି-- ହବଟ ଗଛଟିଏ ଧରି ଦଉଡ଼ି ଆସିଲା—

ପ୍ରଶାନ୍ତ : ମୋତେ ତ ଗିଳି ଦେଇଥାନ୍ତା—ସେଉଁ ଘଡ଼ଘଡି ଗର୍ଜନ—
ବାପ୍‌ରେ ତାଳ ଗଛ ପରି ଲମ୍ବା, ଏତେ ବଡ ବଡ଼ ଦାନ୍ତ—
ମୁଣ୍ଡରେ ଜାଲୁ ଗୋଟିଏ ଆଖି—ଧପ୍ ଧପ୍ ଜଳୁଥିଲା ।

ପ୍ରକାଶ : ତାହା ମିଛ କଥା, ମୁଁ ବି ଦେଖିଛି

ରଜୁ : ତୁମେ ତ ଜଣେ ଏକ ସନ୍ତଆ, ପ୍ରକାଶ ବାବୁ

ପ୍ରଶାନ୍ତ : ଚାଲ ସମସ୍ତେ ଖୋଜିବା, କାଳେ କେଉଁଠି ଲୁଚି ଯାଇଥିବ ।
ସୁବିଧା ଦେଖି କାହାକୁ ଯଦି ଧରିନିଏ ନା

ଅଜୟ : ହଁ, ହଁ ଚାଲ ।   (ଟର୍ଚ୍ଚ ଆଲୋକରେ ଖୋଜୁଛନ୍ତି)

ରଜୁ : ନା, କୁଆଡ଼େ ନାହିଁ ତ, କୋଉଁଠି ଛପିଗଲା ବୋଧେ

ପ୍ରଶାନ୍ତ : ଚାଲ ଫେରିଯିବା

ଅଜୟ : କୁଆଡେ ଯିବା ? କାଳେ ଆଗରେ ଯଦି ହଠାତ୍ ବାହାରି ପଡ଼େ

ରଜୁ : କମ୍ପା ପଛରେ

ପ୍ରକାଶ : ଅକାଶରୁ ଯଦି ଡେଇଁ ପଡେ

ପ୍ରଶାନ୍ତ : ପୃଥିବୀ ଭିତରୁ ଯଦି ବାହାରି ଆସେ

ପ୍ରକାଶ : ଆମେ ପରା ତାକୁ ବାନ୍ଧି ଆଣିଥିଲେ । କ'ଣ ଏତେଟା ଡରୁଛ
ଯଦି ଆସିବ, ପୁଣି ବାନ୍ଧି ନେବା

ଅଜୟ : ତାକୁ ଦେଖି କପର ଅଚେତ ହୋଇଗଲ ?

ପ୍ରକାଶ : ନା, ତୁମେ ଦୁହେଁ ଆମ ଉପରେ ଦୁଇଟି ପଥର ଛେଚିବା
ପାଇଁ ଠେକ ନଥିଲ ? ଏକ ନୂଆ ଆଡ୍‌ଭେଞ୍ଚର ପାଇଁ—

ଅଜୟ : ଆଡ଼ଭେଞ୍ଚର—କାହିଁକି ?

ରଜୁ : ଆମେ ବି ଥଟ୍ଟାରେ ଏପରି କରୁଥିଲୁ ନା ସେ ବି ଏକ
ଅଭିନୟ ।

ପ୍ରକାଶ : ଭୌତିକ ପ୍ରାଣୀଟି କାହୁଁ ଚାଲି ଯାଇଥାନ୍ତା

ପ୍ରଶାନ୍ତ : ମୋତେ ବଡ଼ ଡର ଲାଗୁଛି ।

ଅଜୟ : ଆମେ ପରା ତାକୁ ବାନ୍ଧି ଆଣିଥିଲେ, ଡ଼ର କ'ଣ ? ପଦ ଦେଖାଦବା, ପୁଣି ବାନ୍ଧିଦେବା

ରାଜୁ : ନା, ତାକୁ ହତ୍ୟା କରିବା

ପ୍ରଶାନ୍ତ : ହଁ, ତାକୁ ହତ୍ୟା କରିଯିବା ଉଚିତ ।

ଅଜୟ : ନିଶ୍ଚୟ, ଏଥିରେ ସନ୍ଦେହ ଅଛି ?

ପ୍ରକାଶ : ସୁନ୍ଦର ଆଇଡିଆ । ସେ ବି ବୋଧେ ତାର ପୈତୃକ ପ୍ରାଣ ବଞ୍ଚାଇବାକୁ ଲୁଚି ଯାଇଛି

ପ୍ରଶାନ୍ତ : କାହିଁ, ଗୁରୁଦେବ ଆଜି ଆସି ନାହାନ୍ତି

ରାଜୁ : ଆସିଯିବେ

ଅଜୟ : ସତରେ ବହୁତ ବିଳମ୍ବ ହୋଇଗଲା

ପ୍ରକାଶ : ଆଉ କେତେ ସମୟ ଅପେକ୍ଷା କରିବା ?

ପ୍ରଶାନ୍ତ : ରାଜନୀତି ବିଷୟରେ କିଛି ଆଲୋଚନା ହେଉ ।

ରାଜୁ : ଇରାକ୍—ଇରାନ୍ ଯୁଦ୍ଧ ଚାଲିଛି ।

ପ୍ରଶାନ୍ତ : ମଧ୍ୟବର୍ତ୍ତୀ ନିର୍ବାଚନ ହୋଇପାରେ ।

ଅଜୟ : ପାକିସ୍ଥାନ ପରମାଣୁ ବୋମା ତିଆରି କରୁଛି ।

ପ୍ରକାଶ : ଦରଦାମ୍ ହୁହୁ ବଢ଼ି ଚାଲିଛି ।

ରାଜୁ : ପାନାମାରେ ପୁଣି ସାମରିକ ବିଦ୍ରୋହ ।

ଅଜୟ : ମନ୍ତ୍ରିମଣ୍ଡଳ କଦାଚିତ୍ ଇସ୍ତଫା ଦେବେ ନାହିଁ ।

ପ୍ରଶାନ୍ତ : ପଞ୍ଜାବ ସମସ୍ୟା ସମାଧାନ ପାଇଁ ନୂତନ ସୂତ୍ର ।

ପ୍ରକାଶ : ଭାରତ ସହ ମାଳଦ୍ୱୀପର ସାଂସ୍କୃତିକ, ଅର୍ଥନୈତିକ ଚୁକ୍ତି ।

ରାଜୁ : ରାଜନୀତି ବୋର୍, ପାରାଡାଇଜ୍‌ରେ କ'ଣ ସିନେମା ଚାଲିଛି

ଅଜୟ : ଗାନ୍ଧି

ପ୍ରଶାନ୍ତ : ଫ୍ଲପ୍, ସୁପର ଫ୍ଲପ୍ । ଗାନ୍ଧିଙ୍କ ଉପରେ କ'ଣ ଏକ ଫିଲମ୍ ହୋଇପାରେ ?

ପ୍ରକାଶ : ଗ୍ରିଟା ଗାର୍ବୋ ଉପରେ ବୋଧେ ହୋଇପାରନ୍ତା ।

ଅଜୟ : ଭାରତର ପାକସ୍ଥାନଠାରୁ ଜିତିଥିବା ଟେଷ୍ଟ୍ ମ୍ୟାଚରେ ପରାଜୟ ।

ରାଜୁ : ମହମ୍ମଦ ଅଲ୍ଲି କ'ଣ ସତରେ The Greatest

ପ୍ରଶାନ୍ତ : ଭାରତୀୟ ଖେଳାଳୀ ଅଲିମ୍ପିକ୍‌ରେ କିଛି ମେଡ଼ାଲ୍ ପାଇଲେ ନାହିଁ ?

ପ୍ରକାଶ : ଇଷ୍ଟବେଙ୍ଗଲ୍, ମୋହନ୍ ବାଗାନ୍ ଖେଳ ଚାଲିଥିବାବେଳେ ପୁଣି ଗଣ୍ଡଗୋଳ ।

ପ୍ରଶାନ୍ତ : ଦ ସାଟାନିକ୍ ଭର୍ସେସ୍ ପଢ଼ିଛନ୍ତି ?

ରାଜୁ : ଜ୍ଞାନପୀଠ ପୁରସ୍କାର କିଏ ପାଇଲା ?

ଅଜୟ : ଡାର୍‌ୱିନ୍‌ଙ୍କ ଥିଓରି ଅଫ୍ ଇଭଲ୍ୟୁସନ୍ କ'ଣ ସତ ?

ପ୍ରକାଶ : ଚନ୍ଦ୍ରରେ ବସବାସ କଲେ କିପରି ହୁଅନ୍ତା ?

ରାଜୁ : ଜାକୁଲାଇନ୍ କେନେଡ଼ି ଆରିଷ୍ଟଟଲ୍, ସକ୍ରେଟିସ୍, ଓ ନାସିସ୍‌ଙ୍କୁ ବାହା ହେବା କ'ଣ ଠିକ୍ ହେଲା ?

(ପ୍ରବେଶ କରିଛନ୍ତି ସଂପୂର୍ଣ୍ଣାନନ୍ଦ ସରସ୍ୱତୀ ତାଙ୍କର ସଂକୀର୍ତ୍ତନ ଦଳ ସହ । ରାଜୁ, ପ୍ରଶାନ୍ତ, ଅଜୟ, ପ୍ରକାଶ ତାଙ୍କୁ ପ୍ରଣାମ କରିଛନ୍ତି ଏବଂ ସଂକୀର୍ତ୍ତନରେ ଯୋଗ ଦେଇଛନ୍ତି । ସଂକୀର୍ତ୍ତନ ଦଳ ସଂପୂର୍ଣ୍ଣ ନିମଜ୍ଜିତ । ଖୋଳ କରତାଳରେ ଧ୍ୱନି ନିନାଦିତ । ସଂପୂର୍ଣ୍ଣାନନ୍ଦଙ୍କ ସଙ୍କେତରେ ସଂକୀର୍ତ୍ତନର ହଠାତ୍ ପରିସମାପ୍ତି ଘଟିଛି । ସଂପୂର୍ଣ୍ଣାନନ୍ଦ ନିରୀକ୍ଷଣ କରିଛନ୍ତି ପ୍ରତି ବ୍ୟକ୍ତିଙ୍କୁ)

ସମ୍ପୂର୍ଣ୍ଣାନନ୍ଦ : ଭକ୍ତଗଣ, ସବୁ କୁଶଳ ତ ? (ଆସନ ଗ୍ରହଣ କରିଛନ୍ତି ।) ଆଜ ଆମେ ଶଙ୍କରାଚାର୍ଯ୍ୟଙ୍କ ମୋହ ମୁଦ୍‌ଗରରୁ କିଛି ଅନୁଶୀଳନ କରିବା ।

ମୂଢ଼ ଜହୀହି ଧନାଗମ ତୃଷ୍ଣାଂ କୁରୁ ତନୁ ବୁଦ୍ଧି ମନସି ବିତୃଷ୍ଣାଂ
ଯଲ୍ଲଭସେ ନିଜ କର୍ମୋପାତ୍ତଂ ବିତ୍ତଂ ତେନ ବିନୋଦୟ ଚିତ୍ତଂ ।

ହେ ମୂଢ଼ ! ଧନାଗମ ତୃଷ୍ଣା ତ୍ୟାଗ କର । ଶରୀରରେ, ବୁଦ୍ଧିରେ, ମନରେ ଏହା ପ୍ରତି ବିତୃଷ୍ଣା ପ୍ରଦର୍ଶନ କର । ତୁମ୍ଭେ ଆପଣା କର୍ମଫଳରେ ଯାହା ଲାଭ କରିଛ ତାହାହିଁ ମନ ସନ୍ତୁଷ୍ଟ କର ।

କା ତବ କାନ୍ତା କସ୍ତେ ପୁତ୍ରଃ ସଂସାରୋଽୟ ମତୀବ ବିଚିତ୍ରଃ
କସ୍ୟ ତ୍ୱଂ କଃ କୁତ ଆୟାତ ସ୍ତତ୍ତ୍ୱଂ ଚିନ୍ତୟ ତଦିହ ଭ୍ରାତଃ ।

କିଏ ତୁମର ସ୍ତ୍ରୀ ? କିଏ ପୁତ୍ର ? ଏହି ସଂସାର ଅତିଶୟ ବିଚିତ୍ର ଅଟେ । ତୁମେ କିଏ ବା କେଉଁଠାରୁ ଆସିଲ, ହେ ଭାଇ ସାର କଥାକୁ ଚିନ୍ତା କର ।

ମା କୁରୁ ଧନ ଜନ ଯୌବନ ଗର୍ବଂ ହରତି ନିମେଷାତ୍ କାଳଃ ସର୍ବଂ
ମାୟା ମୟଂ ଇଦ ମଖିଳଂ ହିତ୍ୱା ବ୍ରହ୍ମପଦ ପ୍ରବିଶାଶୁ ବିଦିତ୍ୱା ।

ଧନ ଜନ ଯୌବନର ଗର୍ବ କର ନାହିଁ । କାଳ କ୍ଷଣକ ମଧ୍ୟରେ ଏ ସବୁ ହରଣ କରିଦିଏ । ମାୟା ପରିପୂର୍ଣ୍ଣ ଏହି ସଂସାର ପରିତ୍ୟାଗ କରି ପରଂ ବ୍ରହ୍ମପଦ ପ୍ରାପ୍ତି ନିମିତ୍ତ ଚେଷ୍ଟା କର ଏବଂ ଆଶାମୁକ୍ତ ହୁଅ ।

ନଳିନୀ ଦଳଗତ ଜଳମତି ତରଳଂ ତଦ୍ ବଜ୍ଜୀବନ ମତିଶୟ ଚପଳଂ
କ୍ଷଣମିହ ସଜ୍ଜନ ସଙ୍ଗତି ରେକା ଭବତି ଭବାର୍ଣ୍ଣବ ତରଣେ ନୌକା ।

ପଦ୍ମପତ୍ରସ୍ଥିତ ଜଳପରି ଏହି ଜୀବନ ଅତିଶୟ ଚଞ୍ଚଳ ଅଟେ । ସଂସାରରେ ସାଧୁ ସଙ୍ଗ ଏକମାତ୍ର ଅବଲମ୍ବନୀୟ । ଏହା ମଧ୍ୟ ଭବସାଗରରୁ ପାରି ହେବା ନିମନ୍ତେ ଏକମାତ୍ର ନୌକା ଅଟେ ।

ଯାବତ୍ ଜନନଂ ତାବନ୍ମରଣଂ ତାବ ଜ୍ଜନନୀ ଜଠରେ ଶୟନମ୍
ଇତି ସଂସାରେ ସ୍ଫୁଟତର ଦୋଷଃ କଥମିହ ମାନବ ତବ ସନ୍ତୋଷଃ ।

ମନୁଷ୍ୟ ଯେତେବେଳେ ଜନ୍ମଲାଭ କରେ, ସେତେବେଳେ ସେ ନିଶ୍ଚୟ ମୃତ୍ୟୁମୁଖରେ ପଡ଼େ ଏବଂ ପରେ ମାତୃଗର୍ଭସ୍ଥ ହୁଏ । ସଂସାରରେ ଏହା ପ୍ରକାଶ୍ୟ ଦୋଷ ଅଟେ । ଅତଏବ ହେ ମନୁଷ୍ୟ ! ତୁମ୍ଭର ସନ୍ତୋଷର ବିଷୟ ଆଉ କ'ଣ ଅଛି ? •

ଦିନ ଯାମିନୌ ସାୟଂ ପ୍ରାତଃ ଶିଶିର ବସନ୍ତ ପୁନରାୟାତଃ
କାଳଃ କ୍ରୀଡତି ଗଚ୍ଛତ୍ୟାୟୁ ସ୍ତଦପି ନ ମୁଞ୍ଚ ତ୍ୟାଶା ବାୟୁ ।

ଦିନ, ରାତି, ସନ୍ଧ୍ୟା, ସକାଳ, ଶିଶିର, ବସନ୍ତ ଇତ୍ୟାଦି ଯାଉଅଛି ଏବଂ ଆସୁଅଛି । ଏହିପରି ରୂପେ କାଳ ତାର କରାଳ ରୂପକୁ ବିସ୍ତାର କରି ନୃତ୍ୟ କରୁଅଛି । ଆୟୁ କ୍ଷୟ ଯାଉଅଛି, କିନ୍ତୁ ଆଶା ପରିତ୍ୟାଗ କରିବାକୁ ଇଚ୍ଛା ହେଉନାହିଁ ।

ସଂପୂର୍ଣ୍ଣାନନ୍ଦ : ଆଚ୍ଛା ଶିଷ୍ୟଗଣ, ତୁମର ସନ୍ଦେହ ମୋଚନ ନିମନ୍ତେ ଯେ କୌଣସି ପ୍ରଶ୍ନ କରିପାର ।

ପ୍ରଶାନ୍ତ : ମହାରାଜ, ଭଗବାନ ଅନନ୍ତ, ଏକଥା କ'ଣ ସତ୍ୟ ।

ସଂପୂର୍ଣ୍ଣାନନ୍ଦ : ନିଶ୍ଚୟ ସତ୍ୟ, ଶ୍ରୀ ଅରବିନ୍ଦଙ୍କ ମତରେ ଦୁଇ ଦୁଇ ମିଶି ଚାରି ହୁଏ, ଏ କଥା ଯେପରି ସତ୍ୟ, ଭଗବାନ ଅନନ୍ତ ଏକଥା ତାଠୁଁ ଅଧିକ ବେଶି ସତ୍ୟ ।

ପ୍ରକାଶ : ଭଗବାନଙ୍କ ଦର୍ଶନ ପ୍ରାପ୍ତିର କିଛି ପନ୍ଥା ଅଛି ?

ସଂପୂର୍ଣ୍ଣାନନ୍ଦ : ପନ୍ଥା ଅଛି । ଏ ସଂପର୍କରେ ଶ୍ରୀ ମଦ୍‌ଭଗବତ୍‌ ଗୀତା ଏକାଦଶ ଅଧ୍ୟାୟରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି

ଭକ୍ତ୍ୟାତ୍ୱନନ୍ୟୟା ଶକ୍ୟ, ଅହମେବମ୍ବିଧୋର୍ଜ୍ଜୁନ ।
ଜ୍ଞାତୁଂ ଦ୍ରଷ୍ଟୁଂ ଚ ତତ୍ତ୍ୱେନ, ପ୍ରବେଷ୍ଟୁଂ ଚ ପରନ୍ତପ ।

ହେ ଅର୍ଜ୍ଜୁନ, ଯେ ମୋତେ ନିଷ୍କାମ ଭାବେ ମନେ ସଦା କରି ଏକାନ୍ତ ଭକ୍ତିରେ ଭଜେ ସେ ଭକ୍ତି ବଳରେ ମୋର ବିଶ୍ୱରୂପ ଦେଖିବାକୁ ସମର୍ଥ ହୁଏ । ଯେଉଁମାନେ ମୋର କୃଷ୍ଣଶୂନ୍ୟ ଏକାନ୍ତ ଭକ୍ତ, ସେମାନେ ମୋର ଶରୀରରେ ଲୀନ ହୁଅନ୍ତି ।

ଅଜୟ : ଏ ତ ବଡ କଷ୍ଟକର ବ୍ୟାପାର । ନିର୍ବାଣ ଲାଭର ସହଜ ପନ୍ଥା କେଉଁଠି ଉଲ୍ଲିଖିତ ହୋଇଛି ? ବେଦାନ୍ତରେ ନା ବୌଦ୍ଧ ଦର୍ଶନରେ ?

ସଂପୂର୍ଣ୍ଣାନନ୍ଦ : ମନୁଷ୍ୟର ନିଜ ମନ ମଧ୍ୟରେ । କିନ୍ତୁ ନିର୍ବାଣର ଆବଶ୍ୟକତା କଣ ? ସ୍ୱାମୀ ବିବେକାନନ୍ଦ କହିଛନ୍ତି

Prepared am I for suffering humanity to be born and reborn a thousand times in this world of misery. These creatures wallowing in darkness and distress constitute the only deity of my adoration.

ରାଜୁ : ସାଂପ୍ରତିକ ପୃଥିବୀରେ ବିଭିନ୍ନ ଧର୍ମ ବିଭିନ୍ନ ମତବାଦ ମଧ୍ୟରେ ଅନେକ ବିଭେଦ, ସଂଘର୍ଷ ଲାଗି ରହିଛି । ଏହାର ନିରାକରଣ କିପରି ହୋଇପାରିବ ?

ସଂପୂର୍ଣ୍ଣାନନ୍ଦ : ସହନଶୀଳତା ଦ୍ୱାରା । ଏ ସଂପର୍କରେ ଶ୍ରୀ ରାମକୃଷ୍ଣଙ୍କ ଉକ୍ତି ମୁଁ ଉତ୍‌ଥାପନ କରୁଛି ।

I have had to practise all the religions, Hinduism, Islam and Christianity and I have walked the path of different denominations of Hinduism again—of Sakta, Vaishnava, Vedanta and other sects. I have found that it is the same god towards whom all are travelling, only they are coming through diverse ways.

ପ୍ରଶାନ୍ତ : ମହାରାଜ ସୁଖର ସଂଜ୍ଞା କ'ଣ ?

ସଂପୂର୍ଣ୍ଣାନନ୍ଦ : ଠାକୁର ଅନୁକୂଳଚନ୍ଦ୍ରଙ୍କ ମତରେ ତାହା ତୁମର ସଜୀବ, ଉନ୍ନତ ଓ ଆନନ୍ଦିତ କରି ପାରିପାର୍ଶ୍ୱିକ ଜଗତ ମଧ୍ୟରେ ସମସ୍ତଙ୍କୁ ଉଦ୍‌ଫୁଲ୍ଲ କରି ତୋଳେ ତାହା ହିଁ ସୁଖ ।

ଅଜୟ : କେଉଁ ପ୍ରଣାଳୀ ଅବଲମ୍ବନ କଲେ ଦିବ୍ୟ ଜୀବନ ଲାଭ ହୁଏ ?

ସଂପୂର୍ଣ୍ଣାନନ୍ଦ : ସ୍ୱାମୀ ଶିବାନନ୍ଦଙ୍କ ମତରେ ସ୍ୱାଧ୍ୟାୟ, ବ୍ରହ୍ମଚର୍ଯ୍ୟ, ଯୋଗ, ଭଗବତ୍ ଚିନ୍ତା, ତ୍ୟାଗ, ସତ୍‌ସଙ୍ଗ ଇତ୍ୟାଦି । ଉପନିଷଦ୍ କହେ ଦତ୍ତ, ଦମ୍ୟତ, ଦୟଧ୍ୱଂ

ପ୍ରକାଶ : ବଡ଼ ଜଟିଳ ସମସ୍ୟା । ଏ ତ ଆମ ହେଇ ସମ୍ଭବ ନୁହେଁ । ଆଚ୍ଛା ଉନ୍ନତ ଜୀବନ ଯାପନ ନିମନ୍ତେ ଆମର କ'ଣ ପଥେୟ ହେବା ଉଚିତ ?

ସଂପୂର୍ଣ୍ଣାନନ୍ଦ : ନିଷ୍କାମ କର୍ମ ଏବଂ ସେବା ମନୋବୃତ୍ତିର ପରିପାଳନ ।
ଭଗବାନ ଶ୍ରୀ ସତ୍ୟସାଇ ବାବା ଜୋର ଦେଇ କହିଛନ୍ତି ମାନବ ସେବା ହିଁ ମାଧବ ସେବା । ପୀଡ଼ିତ, ନିଷ୍ପେଷିତ, ଅବହେଳିତ, ଦୀନ, ଦୁଃଖୀ ଜନଙ୍କର ସେବା ଦ୍ୱାରା ହିଁ ମାନବ ଜୀବନର ଉତ୍କର୍ଷ ସାଧନ କରି ହେବ ।

ଆଚ୍ଛା ଶିଷ୍ୟଗଣ, ଆଜି ଏତିକି କେବଳ ରାଜୁ, ଅଜୟ, ପ୍ରଶାନ୍ତ ଏବଂ ପ୍ରକାଶ କିଛି ସମୟ ରହିବେ ।

(ଅନ୍ୟମାନଙ୍କ ପ୍ରସ୍ଥାନ)

ସଂପୂର୍ଣ୍ଣାନନ୍ଦ : ବତ୍ସଗଣ, ତୁମ ସହ ଏକ ଗୋପନୀୟ କଥା ରହିଛି ।

ରାଜୁ, ଅଜୟ : କହନ୍ତୁ

ସଂପୂର୍ଣ୍ଣାନନ୍ଦ : ସାବଧାନ, କାହାକୁ ଏ ବିଷୟରେ ଜଣାଇବ ନାହିଁ ।

ପ୍ରକାଶ, ପ୍ରଶାନ୍ତ : ଆଚ୍ଛା

ସଂପୂର୍ଣ୍ଣାନନ୍ଦ : କାଲି ସକାଳୁ ରାଜଧାନୀ ଯିବା ଦରକାର । ହାକିମ ମହାଶୟଙ୍କ ନିମନ୍ତ୍ରଣ ଅଛି ।

ଅଜୟ : ଆଜ୍ଞା—

ସଂପୂର୍ଣ୍ଣାନନ୍ଦ : ତୁମମାନଙ୍କୁ ବି ମୋ ସହ ଆସିବାକୁ ହେବ, ଏବଂ ଆନୁଷଙ୍ଗିକ ସାମଗ୍ରୀ ଯୋଗାଡ଼ କରିବାକୁ ହେବ । ହାକିମ୍ ମହାଶୟ ବି ନିର୍ଦ୍ଦେଶ ଦେଇଛନ୍ତି ।

ରାଜୁ : କହନ୍ତୁ ।

ସଂପୂର୍ଣ୍ଣାନନ୍ଦ : କାଲି ଭଗବାନ୍ ରଜନୀଶଙ୍କ ଶିଷ୍ୟା ପ୍ରେମସୁଧା ପରିତୃପ୍ତି ଲଭର ଶୀର୍ଷାବସ୍ଥା ବିଷୟରେ ବକ୍ତୃତା ଦେବେ ।

ପ୍ରକାଶ : ପରିତୃପ୍ତି ଲଭର ଶୀର୍ଷାବସ୍ଥା ? Marvellous

ସମ୍ପୂର୍ଣ୍ଣାନନ୍ଦ : ଏକ ମହାନ୍ ଯଜ୍ଞର ବି ବ୍ୟବସ୍ଥା ଅଛି
ପୃଥିବୀର ସାମଗ୍ରିକ କଲ୍ୟାଣ ନିମନ୍ତେ—ବିଶ୍ୱଶାନ୍ତି ନିମନ୍ତେ

ପ୍ରଶାନ୍ତ : ଯେ ଆଜ୍ଞା ମହାରାଜ !

ସମ୍ପୂର୍ଣ୍ଣ ନନ୍ଦ : ଏବଂ କର୍ମଶାଳାର ବି ବ୍ୟବସ୍ଥା ଅଛି ।

ଅଜୟ : କର୍ମଶାଳା ମାନେ ?

ସମ୍ପୂର୍ଣ୍ଣାନନ୍ଦ : ତୁମେ ସେଠାରେ ବୁଝିପାରିବ ।

ଅଜୟ : ହଜୁର ।

ସମ୍ପୂର୍ଣ୍ଣାନନ୍ଦ : ସେଠାରେ ଭଜନାଶ ଦର୍ଶନ ସମ୍ପର୍କରେ ବିସ୍ତୃତ
ଆଲୋଚନା ହେବ ।

ରଜୁ : ଭଜନାଶ ଦର୍ଶନ !

ପ୍ରଶାନ୍ତ : ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ବ୍ୟବସ୍ଥା

ପ୍ରକାଶ : ଥାଇ ପାରେ, ଥାଇପାରେ । କର୍ମଶାଳାର ବନ୍ଦୋବସ୍ତ
ଯେତେବେଳେ ଅଛି ଥାଇପାରେ ।

ସମ୍ପୂର୍ଣ୍ଣାନନ୍ଦ : ତେଣୁ ସେ ସବୁ ସାମଗ୍ରୀ ଆଜି ହିଁ ଯୋଗାଡ଼ କରିବାକୁ
ହେବ । ସେ ଦାୟିତ୍ୱ ତୁମମାନଙ୍କ ଉପରେ ନ୍ୟସ୍ତ ହୋଇଛି ।

ରଜୁ, ଅଜୟ, ପ୍ରଶାନ୍ତ : ଯେ ଆଜ୍ଞା ମହାରାଜ ।

(ରଜୁ ପ୍ରତି)—ଯଜ୍ଞ ମଣ୍ଡପ, ସାଜସଜ୍ଜା, ପ୍ରାୟ ଏକ ଶହ ଅତିଥିଙ୍କ
ସତ୍କାର ଏ ସବୁ ଦାୟିତ୍ୱ ତୁମର ।

ରଜୁ : ଆଜ୍ଞା !

(ପ୍ରଶାନ୍ତ ପ୍ରତି) : ବିଶୁଦ୍ଧ ଘିଅ, ଗୁଗୁଳ, ଡାଲି, ଶନ, ଦହି, ହୋମ ପାଇଁ
ସମସ୍ତ ସାମଗ୍ରୀ—ଏ ଦାୟିତ୍ୱ ତୁମର ।

ପ୍ରଶାନ୍ତ : ଆଜ୍ଞା

ସଂପୂର୍ଣ୍ଣାନନ୍ଦ : ଅଜୟ, ସମସ୍ତ ରାଜନୈତିକ ନେତା, ଉଚ୍ଚ ପଦସ୍ଥ କର୍ମଚାରୀଙ୍କ ପରିଚର୍ଯ୍ୟା ଆଇନ, ଶୃଙ୍ଖଳା, ସୁନ୍ଦରୀ ରମଣୀ ଯୋଗାଡ଼—ଏ ସବୁ ଦାୟିତ୍ୱ ତୁମର ।

ହିପିଆର୍, ଏ ସଭା, କର୍ମଶାଳା ଏବଂ ଯଜ୍ଞ ଅନ୍ୟ କେହି ଯେପରି ଜାଣିବାକୁ ପାଆନ୍ତି ନାହିଁ । ବିଶେଷତଃ ସାମ୍ବାଦିକଗଣ

ଅଜୟ : ଯେ ଆଜ୍ଞା ମହାରାଜ ।

ସଂପୂର୍ଣ୍ଣାନନ୍ଦ : (ପ୍ରକାଶ ପ୍ରତି) ତୁମର ଦାୟିତ୍ୱ ଚାନ୍ଦା ସଂଗ୍ରହ । ଏ ଲିଷ୍ଟ୍ ଅନୁଯାୟୀ ଭଦ୍ରବ୍ୟକ୍ତିମାନଙ୍କୁ ଟେଲିଫୋନ୍ କର । ଚାନ୍ଦା ଶୀଘ୍ର ଦାଖଲ କରିବାକୁ ନିର୍ଦ୍ଦେଶ ଦିଅ । ଜଣ ପ୍ରତି ଅନ୍ୟୁନ ଦଶ ହଜାର । ଏ ଯଜ୍ଞ ପରେ ମୋର ବିଦେଶ ଗସ୍ତ ଅଛି ଯେ । ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା, ବ୍ରିଟେନ୍ ଫ୍ରାନ୍ସ୍, ଇଟାଲି, ଜର୍ମାନୀ, ଜାପାନ୍ ଆଦି ଗସ୍ତ କରି ବିଦେଶୀ ଭକ୍ତଗଣଙ୍କୁ ବୈଦିକ ସଂସ୍କୃତିର ମହତ୍ତ୍ୱ ସଂପର୍କରେ ପ୍ରବଚନ ଦେବାକୁ ହେବ ସେଥିପାଇଁ ମୋଟା ଚାନ୍ଦା ସଂଗ୍ରହ ନିହାତି ଆବଶ୍ୟକ । ବୁଝିଲ ? ଅଧାଅଧି ଯଜ୍ଞ ଏବଂ ଆନୁଷଙ୍ଗିକ କାର୍ଯ୍ୟରେ ଖର୍ଚ୍ଚ ହୋଇ ଅଧାଅଧି ତ ବଳକା ହେବ । ତାର ସଦ୍ ବ୍ୟବହାର ଆବଶ୍ୟକ । ପୁଣି ମୋ ସହ ପ୍ରେମିକା ବି ଯାଇପାରନ୍ତି । ଯାଅ, ସମସ୍ତେ ଶୀଘ୍ର କାମରେ ଲାଗିଯାଅ ।

ପ୍ରକାଶ : କିନ୍ତୁ ହଜୁର୍, ମୁଁ ତ ପାରିବିନି—

ସଂପୂର୍ଣ୍ଣାନନ୍ଦ : (ଶାଣିତ ଦୃଷ୍ଟିରେ) ପାରିବ, ନିଶ୍ଚିତ ପାରିବ ।

ପ୍ରକାଶ : କିନ୍ତୁ ସାର୍ କର୍ମଶାଳାର ଆବଶ୍ୟକତା ସଂପର୍କରେ ବୁଝେଇ ଦିଅନ୍ତୁନା —

ସଂପୂର୍ଣ୍ଣାନନ୍ଦ : ସୀମିତ ଜୀବନ କାଳ ମଧ୍ୟରେ ଆନନ୍ଦର ଅନ୍ୱେଷଣ ମାନେ ସୁଖର ଅନ୍ୱେଷଣ ହିଁ ମଣିଷର ଚରମ ଲକ୍ଷ୍ୟ । ଆନନ୍ଦ, ସୁଖ, ତୃପ୍ତି ହଠାତ୍ କେମିତି ମଣିଷ ଖୋଜି ପାଇପାରିବ, ମାନେ ଜାବୁଡ଼ି ଧରିପାରିବ, ତାହା ହିଁ କର୍ମଶାଳାର ଉଦ୍ଦେଶ୍ୟ ।

ରାଜୁ : ହଜୁର ଆନନ୍ଦର ଅର୍ଥ କ'ଣ ସୁଖ ?

ସଂପୂର୍ଣ୍ଣାନନ୍ଦ : ନିଶ୍ଚୟ । ଆଚ୍ଛା ଆନନ୍ଦର ଅର୍ଥ ତୁମେ କ'ଣ ବୁଝ ?

ରାଜୁ : ସେଦିନ ସକାଳେ ଆସିଗଲ ଚୁପ୍ କରି
ବହୁ ଦିନ ସାଥୀ ଆମେ, ଅନାଦି କାଳର
ଏ ଜନ୍ମ, ଗତ ଜନ୍ମ, ଜନ୍ମ ଜନ୍ମାନ୍ତର
ରହିଁଥିଲି ତୁମ ପାଇଁ ବକ ଧ୍ୟାନେ, ଉତ୍ସୁକ ନୟନେ
ତୁମ ସ୍ପର୍ଶ ଝଲସରେ ଉନ୍ମତ୍ତ ମୁଁ ଉଦ୍‌ଭ୍ରାନ୍ତ, ବ୍ୟଥିତ
ବାସନା ତୁମ ସ୍ମୃତି ତୁମ ମୋର ମାଂସ ହାଡ଼େ
ରହିଁ ରହିଁ ଶୋଇଥିବା ଶୋଣିତର ପ୍ରତିଟି ଗହ୍ୱରେ
ଏ ଅବଶ ଦେହ ସାରା ତୁମ ପ୍ରତିବିମ୍ବ
ହୃଦୟର ଟିକ୍ ଟିକ୍ ଶବ୍ଦ
ମୋ ପ୍ରାଣର ନିଃଶ୍ୱାସ ପ୍ରଶ୍ୱାସେ
ଆକାଶର ପ୍ରସ୍ଫୁଟିତ ଜ୍ୟୋତ୍ସ୍ନା, ରିମ୍‌ଝିମ୍ ତାନ
ପୁଷ୍ପର ସୁରଭି ସବୁ ଏକୀଭୂତ ତୁମ ସ୍ୱରରେ
ତୁମେ ମୋର ଅନନ୍ତ ପ୍ରତୀକ୍ଷା, ସବୁ ମୁକ୍ତି ଅସୀମ ପ୍ରଶସ୍ତି
ଆଲୁଅର ସବୁ ପ୍ରତିଶ୍ରୁତି ।

ସଂପୂର୍ଣ୍ଣାନନ୍ଦ : ମାନେ ତୁମ ପାଇଁ ସୁଖ କେବଳ କାମିନୀ ଏଇୟା ତ ?
ଅଜୟ, ତୁମେ ଯଦି ଭଗବାନଙ୍କୁ ହଠାତ୍ ସାକ୍ଷାତ୍ କରନ୍ତ

ଅଜୟ : ଜାଣେନା । ମୁଁ କିଆଁ ଡରିଯାଏ, କାହା ଉପ୍ରେ ଜଡ଼ସଡ଼ ହୁଏ ।
ଲୁଚି ଲୁଚି ଅଜାତ ସାଉଁଟି ମୁଁ ତ ମଜ୍ଜିଥାଏ ତୁମରି ତନ୍ଦ୍ରାରେ
କାହିଁକି ମୋ ମାଳହ୍ରଦ ଥରିଯାଏ
ଶାନ୍ତ ଭସା ମେଘ କମ୍ପା କ୍ଳାନ୍ତ ତାରାର ଛୁଇଁରେ
ଶୀତଦିନ ସକାଳର ହେମାଳ ବାଆରେ
ବାଘର ହେଣ୍ଟାଳ ଶବ୍ଦ ମୁରଲୀର ତାନ
ଶୁଣିବାକୁ ଦଉଡନ୍ତି ଯେତେ ଗୋପୀଗଣ

ପାହାଡ଼ର ଆବେଦନ ବାହାଘର ଖେଳ
ଯମୁନା ତୀରରେ ଶୁଭେ ରାଧାର କନ୍ଦନ

ସଂପୂର୍ଣ୍ଣାନନ୍ଦ : ମାନେ ତୁମ ପାଇଁ ଭଗବତ୍ ଚିନ୍ତା କେବଳ ପାହାଡର ଆବେଦନ, ବାହାଘର ଖେଳ

ପ୍ରକାଶ : ରାଧାର କନ୍ଦନ ହଜୁର୍ ରାଧାର କନ୍ଦନ

ସଂପୂର୍ଣ୍ଣାନନ୍ଦ : ଆଜ ତୁମ ପାଇଁ ଭଗବତ୍ ଦର୍ଶନର ଅର୍ଥ କ'ଣ ?

ପ୍ରକାଶ : ସେ ଏକ ଅପହଞ୍ଚ ରାଜ୍ୟ
କ ମସୃଣ କ ସଫେଦ୍ ଉଷା ମେଘପରି
କାହାକୁ ମୁଁ ପଚ୍ଛରିବ ତା'ର ପରିଚୟ
ତାହାର ତ ବହୁ ନାମ, ବହୁ ଛଦ୍ମବେଶ ।
ମିଞ୍ଜି ମିଞ୍ଜି ଆଲୁଅଟି କରୁ କରୁଥାଏ
ପତଙ୍ଗ ତ ଅସ୍ତବ୍ୟସ୍ତ କରେ
ତୁମେ କ'ଣ ଆସିବ କ ?
ବତ୍ତିକୁ ସଜାଡ଼ ଦେବ,
ତେଲ କଣ୍ଟୁ ଢ଼ାଳ ଦେଇ ପୁଣି ଜାଳ ଦେବ
ତା ପରେ ଆଲୁଅରେ ଗ୍ରୁଏଁ ପଶିଯିବ
ମୋ ଦ଼ାଁ ଛି ଡ଼ାକ ଦେଇ ପୁଣି ଲୁଚିଯିବ ।

ସଂପୂର୍ଣ୍ଣାନନ୍ଦ : ମୁଁ କିଛି ବୁଝିପାରୁନ ଏ ସବୁ । ବୋଧେ ତୁମେ ବ ଠିକ୍ କ'ଣ ଚାହଁ ତାହା ଜାଣ ନାହିଁ । ନୋହିଲେ ସିଧା ସିଧା ନ କହି ଏ ବକ୍ରୋକ୍ତି, କବିତା କାହିଁକି ? ପ୍ରଶାନ୍ତ, ତୁମ ପାଇଁ ଈଶ୍ୱରଙ୍କ ସଂଜ୍ଞା କ'ଣ ?

ପ୍ରଶାନ୍ତ : ଏକ ଉପୁାର୍ଜ୍ଜି କପୋତ
ସଞ୍ଜବେଳେ ମୋ କାନରେ ଗୁଣୁଗୁଣୁ ହୁଏ
ଜୀବନ ଓ ଜଞ୍ଜାଳରେ ମୁଁ ଯେବେ ମସ୍‌ଗୁଲ୍ ଥାଏ
ଅପରାହ୍ନ ଡ଼ାଆଣୀ ଖବରେ କାଳେ ତୁମେ

ମୋତେ ଖୋଜୁଥିଲ
ହଠାତ୍ ବି ଆସି ଯାଇପାର
ପକ୍ଷୀ କ'ଣ ସତ କହେ
ସେ ତ ତାର ଗୀତରେ ବିଭୋର
ଅବା ରକ୍ତରେ ବିଭୋର
ତୁମ କଥା କହିବାକୁ ବେଳ କାହିଁ ତାର ।

ସମ୍ପୂର୍ଣ୍ଣାନନ୍ଦ : ହିଁ ହଠାତ୍ ଆସି ଯାଇପାରନ୍ତି । ତେଣୁ ପ୍ରସ୍ତୁତ ରହିବା ହିଁ ଭଲ । କିନ୍ତୁ ଠିକ୍ ଠିକ୍ କହ, ତୁମମାନଙ୍କ ପାଇଁ ଆନନ୍ଦ କାମିନୀ ନା କାଞ୍ଚନ ନା ସୁତ ନା ଆଉ କିଛି ।

ପ୍ରକାଶ : ହଜୁର୍, କେବଳ କାମିନୀ ନୁହେଁ, କାଞ୍ଚନ ବି ନୁହେଁ, ଇମ୍ପୋର୍ଟେଡ୍ ଇମ୍ପାଲା ନୁହେଁ କି ପ୍ରାଇମ୍ ଲେସ ପ୍ୟାଲେସ୍ ନୁହେଁ L. S. D ନୁହେଁ କି ସାମ୍ପେନ୍ ନୁହେଁ ।
ଏକ ଅନିର୍ବଚନୀୟ ଭାବର ଅନ୍ତଃ ଫଲ୍ଗୁ
ଯାହା କେବଳ ଚିନ୍ତା କରିହୁଏ, ବ୍ୟକ୍ତ ହୁଏ ନାହିଁ
ଅନୁଭବ କରି ହୁଏ, ପ୍ରକାଶ କରି ହୁଏ ନାହିଁ ।

ରାଜୁ : ଠିକ୍ ଠିକ୍, କିନ୍ତୁ ସାଂସାରିକ ସୁଖ ପାଇଁ କାମିନୀ, କାଞ୍ଚନର ନିଶ୍ଚୟ ଆବଶ୍ୟକତା ଅଛି ।

ପ୍ରକାଶ : ସେ ଏକ ସୁନାର ହରିଣ
ଯା' ପଛରେ ଦୌଡ଼ି ଦୌଡ଼ି ରାମଚନ୍ଦ୍ର କ୍ଲାନ୍ତ ଓ ବ୍ୟଥିତ
ହତାଶରେ ହାହି ହାହି ଡାକ

ଅଜୟ : ରାମଚନ୍ଦ୍ର ହାହି ହାହି ଡାକ ଦିଅନ୍ତି ? ଅଜବ୍ ରାମାୟଣ

ପ୍ରକାଶ : ଶୁଣ, ସୁନା ମୃଗରୂପୀ ମାରୀଚ କହିଲା, ହେ ମହାଭାଗ, ଇଚ୍ଛା ମାତ୍ରକେ ବାଘରୂପ ନେଇ ତୁମକୁ ଖାଇ ଦେଇପାରେ । କିନ୍ତୁ ତୁମର ଦୁର୍ଦ୍ଦଶା ଦେଖି ମୁଁ ମର୍ମାହତ । ଏଥର ଶର ନିକ୍ଷେପ କରନ୍ତୁ । ଆପଣଙ୍କ ଅସ୍ତ୍ରରେ ମୁଁ ଉଦ୍ଧାର ପାଇଯିବି ।
ନଚେତ୍ ରାବଣ ପରି ନରାଧମ ହସ୍ତରେ ମୋ ମୃତ୍ୟୁ ସୁନିଶ୍ଚିତ ।

ପ୍ରଶାନ୍ତ : ତା ପରେ ।

ପ୍ରକାଶ : ମାରୀଚ କହିଲା, ହେ ଆର୍ଯ୍ୟ, ମୋତେ ଯେ ଆପଣ ହତ୍ୟା କରି ପାରିବେ, ଚିନ୍ତା କଦାପି ମନରେ ପୋଷଣ କରନ୍ତୁ ନାହିଁ । ମୁଁ ମାୟାବୀ, ଅଷ୍ଟ ପିଚ୍ଛିଳାକେ ସହସ୍ର ଯୋଜନ ଦୌଡ଼ଯାଇ ଅନ୍ତରୀକ୍ଷରେ ମିଳାଇଯିବି । ଆଜ ଆପଣ ଭକୁଆ ହୋଇ ରହିଥିବେ । ଏତକ ଦଉଡ଼ାରେ ତ ମୁଁ ବି କ୍ଲାନ୍ତ । କିନ୍ତୁ ମୁଁ ପ୍ରାଣ ବିସର୍ଜନ କରିବାକୁ ଠିକ୍ କରିଛି ଅନୁଶୋଚନାରେ, ରାବଣର ଭର୍ତ୍ସନାରେ । ଯଦି ଆପଣ ସତକୁ ସତ ଭଗବାନ ହୋଇଥାନ୍ତି ତେବେ ଆପଣଙ୍କ ଶରରେ ସ୍ୱର୍ଗଲୋକ ଯାଇପାରେ । ଅନ୍ତିମ କର୍ମରେ ଆପଣ ତ ଆତ୍ମ ସନ୍ତୋଷ ଲାଭ କରିବେ ପ୍ରାଣପ୍ରିୟା ସୀତାଙ୍କର ମନ ଆହ୍ଲାଦ କରି ପାରିଲେ ସୁନା ହରିଣର ହତ୍ୟାରେ ।

ସଂପୂର୍ଣ୍ଣାନନ୍ଦ : ଏ ତ କ'ଣ ଭିନ୍ନ ଏକ ରାମାୟଣ ।

ପ୍ରକାଶ : ଉଦ୍ଭଟ ରାମାୟଣ ହଜୁର୍

ରାଜା : ରଖ ହେ ତୁମ ରାମାୟଣ, ହଜୁର୍ କର୍ମଶାଳା ବିଷୟରେ କିଛି କହୁନ ।

ପ୍ରଶାନ୍ତ : ନା ହଜୁର, ହିଁ ଉଦ୍ଭଟ ରାମାୟଣରୁ ସେ କିଛି କହୁନା ।

ସଂପୂର୍ଣ୍ଣାନନ୍ଦ : ଠିକ୍ ଅଛି ।

ପ୍ରକାଶ : ତା ପରେ ରାମଚନ୍ଦ୍ର କହିଲେ, ହେ ଯକ୍ଷ କି ରକ୍ଷ କି ରାକ୍ଷସ କି ଗନ୍ଧର୍ବ କି ସୁନାହରିଣ ଦୟା କରି ଠିଆ ହୋଇଯାଅ, ଆଜ ଦଉଡ଼ନା, ମୁଁ ଯେ ପାରୁନି । ମୁଁ ଅବ୍ୟର୍ଥ ଅସ୍ତ୍ର ପ୍ରୟୋଗ କରେ । ଅନ୍ତିମ କର୍ମରେ ତୁମ ଚମଡ଼ା ଉତ୍ତାରି ନେଇ ତ ସୀତାଙ୍କୁ ଦେଇପାରିବି । ଏହା ଶୁଣି ସୁନାମୃଗ ଫିକ୍ କିନା ହସିଦେଲା ଏବଂ ଡ଼ାକ ଦେଲା, ରକ୍ଷ ହେ ଲକ୍ଷ୍ମଣ । ଠିକ୍ ସେ ସମୟରେ ରାମଚନ୍ଦ୍ର ଶର ନିକ୍ଷେପ କଲେ ।

ଅଜୟ : ବନ୍ଦ କର ତୁମ ଉଦ୍ଭଟ ସମାପ୍ତ । ଆମ ସଭ୍ୟତା, ବୈଦିକ ସଂସ୍କୃତିର ଚରମ ଅପମାନ !

ରାଜୁ : ସାଲ୍ ମାନ୍ ରସ୍ ଦି ବିଷୟ ଜାଣିନା, ଟେରିରିଷ୍ଟ୍ ମାନେ ଉଡ଼ାଇ ଦେବେ ଯେ ଉଦ୍ଭଟ ସମାପ୍ତ ବନ୍ଦ ହୋଇଯିବ ।

ପ୍ରକାଶ : ମହାପୁରୁଷ ହୋଇଯିବ, ଅମର ଶହୀଦ୍ ହୋଇଯିବ ।

ରାଜୁ : କର୍ମଶାଳା ବିଷୟରେ କିଛି କହନ୍ତୁ ନା ହଜୁର୍ ।

ପ୍ରଶାନ୍ତ : ହଁ ହଜୁର, କର୍ମଶାଳା ପ୍ରୋଗ୍ରାମ ଅଭ୍ୟାସ କରିନେବା ।

ଅଜୟ : ହଁ ସାର୍, ଏଠାରେ ଅଭ୍ୟାସ କରିନେବା ।

ସମ୍ପୂର୍ଣ୍ଣାନନ୍ଦ : ସଙ୍ଗୀତର ଅପୂର୍ବ ମୂର୍ଚ୍ଛନା, ପଞ୍ଚମ ତାନ ଭାସି ଆସିଛି ।
(ନେପଥ୍ୟରୁ ମନ୍ଦ୍ର ଯନ୍ତ୍ର ସଙ୍ଗୀତର ଆବଦ୍ଧ ତାନ, ଉଚ୍ଚକୁ ଉଠି ଉଠି ହଠାତ୍ ବନ୍ଦ ହୋଇଯାଇଛି ।)
ତା ପରେ ସମ୍ପୂର୍ଣ୍ଣ ନୀରବତା
ସମସ୍ତେ ସବୁ ଶକ୍ତି ହୃଦୟରେ ଚିତ୍କାର କର 'ଓଶୋ'
କହ ସମସ୍ତେ 'ଓଶୋ'
(ରାଜୁ, ପ୍ରକାଶ, ପ୍ରଶାନ୍ତ, ଅଜୟ ଚିତ୍କାର କରିଛନ୍ତି 'ଓଶୋ')
ପୁଣି ନୀରବତା । ପୁଣି ସଙ୍ଗୀତର ମୂର୍ଚ୍ଛନା ।
ହଠାତ୍ ନୀରବତା ଓଶୋ—ପୁଣି ସଙ୍ଗୀତ, ହଠାତ୍ ନୀରବତା, ଓଶୋ—ସଙ୍ଗୀତ—
ପ୍ରବେଶ କରିବେ ପ୍ରେମସୁଧା, ରଜନୀଶଙ୍କ ଶକ୍ତି ଦର୍ଶନ ତତ୍ତ୍ୱ ବିଶ୍ଳେଷଣ କରିବେ ।

ପ୍ରକାଶ : କିନ୍ତୁ ହଜୁର୍, ଓଶୋର ଅର୍ଥ—

ସମ୍ପୂର୍ଣ୍ଣାନନ୍ଦ : ପ୍ରେମ, ସଙ୍ଗୀତ, ଦିବ୍ୟଜ୍ଞାନ

ଅଜୟ : ସଙ୍ଗୀତ, ନୀରବତା ଓ 'ଓଶୋ'ର ଉଚ୍ଚାରଣରେ ସମସ୍ତ ଆନନ୍ଦ, ସୁଖ ମିଳିଯାଏ ?

ସମ୍ପୂର୍ଣ୍ଣାନନ୍ଦ : ଏକଦା ନରେନ୍ଦ୍ରନାଥ ସ୍ୱାମୀ ରାମକୃଷ୍ଣଙ୍କୁ ପଚାରିଲେ, ଆପଣ ଭଗବାନ ଦେଖିଛନ୍ତି ? ସ୍ୱାମୀଜୀ କହିଲେ, ହଁ, ତାଙ୍କ ସହ କଥା ବାର୍ତ୍ତା ବି କରିଛି । ନରେନ୍ଦ୍ରନାଥ କହିଲେ ମୁଁ ଦେଖି ପାରିବି ? ସ୍ୱାମୀଜୀ କହିଲେ, ନିଶ୍ଚୟ ।

ପ୍ରକାଶ : ହଜୁର୍, I Protest ଆପଣ ମହାନ୍ ସନ୍ଥ ରାମକୃଷ୍ଣ, ସ୍ୱାମୀ ବିବେକାନନ୍ଦଙ୍କ ସହ ରଜନୀଶଙ୍କୁ ମୋଟେ ତୁଳନା କରି ପାରିବେ ନାହିଁ । ହିମାଳୟ ପର୍ବତ ସହ ପଥର ଗଦା କେବେ ତୁଳନୀୟ ?

ଅଜୟ : ହଜୁର୍ ଏ ରଜନୀଶ୍ କୁଆଡେ ସେକ୍ସ୍ ଗୁରୁ । ଭ୍ରଷ୍ଟାଚାର, ଅନାଚାରର ପ୍ରଚାରକ ପୁଣି ଏ AIDS ଯୁଗରେ ।

ସମ୍ପୂର୍ଣ୍ଣାନନ୍ଦ : ସବୁ ଯୁଗରେ ମହାପୁରୁଷଗଣଙ୍କୁ ଏପରି ବିଭିନ୍ନ ଆଖ୍ୟା ଦିଆଯାଇଥାଏ । କିନ୍ତୁ ମୋ ଅଭିଜ୍ଞତାରୁ କହି ପାରିବି ଅଣାନନ୍ଦମୟ ସୁଖ ଲାଭର ଏକମାତ୍ର ପନ୍ଥା ହେଉଛି, ରଜନୀଶ୍ ମାର୍ଗ ।

ଅଜୟ : ହଜୁର୍

ସମ୍ପୂର୍ଣ୍ଣାନନ୍ଦ : ଧ୍ୟାନ ନିମନ୍ତେ ରଜନୀଶ୍ ପାଞ୍ଚଗୋଟି ପନ୍ଥା ନିର୍ଣ୍ଣୟ କରିଛନ୍ତି । ଏକ, ଡାଇନାମିକ୍ସ ଧ୍ୟାନ ପ୍ରଥମେ ଜୋର୍‌ରେ ପ୍ରଶ୍ୱାସ ନେଇ ବିପୁଳ ଶକ୍ତି ସଂଗ୍ରହ । ପ୍ରଶ୍ୱାସ ନିଅ ଜୋର୍‌ରେ ହଁ, ଦ୍ୱିତୀୟରେ ଜୋର୍‌ରେ ନିଃଶ୍ୱାସ ଛାଡ଼ ।
(ରାଜୁ, ପ୍ରଶାନ୍ତ, ଅଜୟ, ପ୍ରକାଶ ସେପରି କରିଛନ୍ତି)
ତୃତୀୟରେ ମନ୍ତ୍ର ହୁ ହୁ ହୁ ଗାନ କରିଯିବ ଏବଂ ବସିବା ସ୍ଥାନରୁ କେବଳ ଡେଇଁବ ।

ସମ୍ପୂର୍ଣ୍ଣାନନ୍ଦ : ହୁ ହୁ ହୁ

ଅଜୟ : ହୁ ହୁ ହୁ (ଡେଇଁଛନ୍ତି)

ପ୍ରକାଶ : ହୁ ହୁ ହୁ

ପ୍ରଶାନ୍ତ : ହୁ ହୁ ହୁ

ସମ୍ପୂର୍ଣ୍ଣାନନ୍ଦ : ଭକ୍ତଗଣଙ୍କ କୁଣ୍ଡଳିନୀ ଯୋଗ ପୁଣି ଦେହଟାକୁ ଧୀରେ ଧୀରେ ଦୋହଲାଇବ । ସମୁଦ୍ର ନୃତ୍ୟ ପରେ ଆଖି ବନ୍ଦକରି ଚଟାଣ ଉପରେ ଶୟନ । ବୁଝିଲ ?

ରାଜୁ : ସାର୍, ନାଚିବୁ ?

ଅଜୟ : ହଁ ସାର୍, ନାଚିବୁ ।

ସଂପୂର୍ଣ୍ଣାନନ୍ଦ : ହଁଉ ନାଚ (ସମସ୍ତେ ନାଚନ୍ତି)

ଠିକ୍ ଅଛି ବିଶ୍ରାମ ନିଅ । ସମସ୍ତେ ବସିଛନ୍ତି— ନା, ନା ଶୟନାବସ୍ଥାରେ । ମାନେ ଶୋଇଯାଅ । ବୁଝିଲ

( ସମସ୍ତେ ଶୋଇ ଯାଇଛନ୍ତି )

ଠିକ୍ ଅଛି । ଅନ୍ୟ ଏକ ଧ୍ୟାନର ନାମ ରହସ୍ୟ ଗୋଳାପ ଧ୍ୟାନ । ପ୍ରଥମେ ଭକ୍ତଗଣ କେବଳ ହସନ୍ତୁ, ତା ପରେ କାନ୍ଦନ୍ତୁ ।

ହଁ ହସ, ସମସ୍ତେ ଜୋର୍‌ରେ ହସ । (ହସିଛନ୍ତି)

ଏଥର କାନ୍ଦ, ଜୋର୍‌ରେ କାନ୍ଦ । (କାନ୍ଦନ୍ତି)

ତା ପରେ ଯେ କୌଣସି ବିଷୟ ମନକୁ ଆସୁଛି, ତାହା ହିଁ ଚିନ୍ତା କର । କହ, କ'ଣ ମନକୁ ଆସୁଛି ?

ରାଜୁ : ହଜୁର୍, ସୁନ୍ଦରୀ ତରୁଣୀ

ପ୍ରଶାନ୍ତ : ହଜୁର୍, ଇମ୍ପୋର୍ଟେଡ୍ କାର୍ ।

ପ୍ରକାଶ : ହଜୁର୍, ଚିକେନ୍ ପକୋଡ଼ା

ଅଜୟ : ହଜୁର୍, ପ୍ୟାରିସ୍, ଲଭ୍ ଇନ୍ ଟୋକିଓ

ସମ୍ପୂର୍ଣ୍ଣାନନ୍ଦ : ଠିକ୍ ଅଛି, ଅନ୍ୟ ଏକ ଧ୍ୟାନ ହେଉଛି, ଅମନଯୋଗୀ ଧ୍ୟାନ ନିରବଚ୍ଛିନ୍ନ ଅସଂଗତ ଆଳାପ—Nonsense talk କିଏ କହିପାରିବ ?

ପ୍ରଶାନ୍ତ : ପ୍ରକାଶ ବାବୁ, ଆପଣଙ୍କ ଉଦ୍ଭଟ ସମାଧାନ କହୁ ନାହାନ୍ତି ?

ପ୍ରକାଶ : କିନ୍ତୁ ଏହା Nonsense ନୁହେଁ ଯେ--

ଅଜପ୍ : ହଜ ଚଳବ

ପ୍ରକାଶ : ପ୍ରଥମେ ଙ୍କ୍ରୋ କର୍‌ଯାଜ ମହାସଣ୍ଡ ସୀତାଙ୍କୁ ରାବଣ ପରି ଦୁରାତ୍ମା ଅପହରଣ କଲ୍ କପର Modus Operandi ମାନେ ଉଦ୍ଦେଶ୍ୟ ମାନେ ପ୍ରକ୍ରିୟା ମାନେ Modus Operandi ମାନେ ଦୈହିକ ଆକର୍ଷଣ ବିକର୍ଷଣ ମାନେ ସେଓ ହୁ‌‌‌ େତ ଏକ ଅଙ୍ଗୁଳି ଧରି ଥାଇପାରେ କିମ୍ବା କେଟଗୁଚ୍ଛକୁ ଟାଣି ଥାଇପାରେ କିମ୍ବା ପୂର୍ବ ପାପ୍ତକକ ଟେକ ନେଇ ଥାଇପରେ ଯଦ୍ୟାପି ସୀତା ନିଶ୍ଚିତ ଭାବେ resist କରିଥିବେ ମାନେ ପ୍ରତିରୋଧ କରିଥିବେ କାରଣ ସେ କଦାପି ରାବଣ ସହ ଅନ୍ୟ ଦେଶ ପରିଭ୍ରମଣ କରିବା ପାଇଁ ପୁଷ୍ପକ ବିମାନକୁ ବାହାରି ନଥିବେ ବିଶେଷତଃ ପରମ ଅରାଧ୍ୟ ସ୍ୱାମୀ ଏବଂ ଲକ୍ଷ୍ମଣ ପରି ଦେବର ଯେତେବେଳେ ଘରେ ନାହାନ୍ତି ମାନେ ତାଙ୍କ ଦ୍ୱାରା ଆଦିଷ୍ଟ ହୋଇ ଏବଂ ଉତ୍ପ୍ରେରିତ ହୋଇ ସୁନାହରିଣ ପିଛା ଦଉଡିବା ପାଇଁ ଯେତେବେଳେ ବାଧ୍ୟ ହୋଇଛନ୍ତି ନିଶ୍ଚିତ ଭାବେ କୁହାଯାଇପାରେ ସୀତାଙ୍କ ରାବଣ ପ୍ରତି ଘୋର ଅସୂୟା ଜନ୍ମିବା ସ୍ୱାଭାବିକ ଅର୍ଥାତ୍ ସୀତା କଦାପି ରାବଣଙ୍କ ବେଶଭୂଷା ମାନେ ସମ୍ପତ୍ତି ମାନେ ବ୍ୟକ୍ତିତ୍ୱ ମାନେ Personality ଦ୍ୱାରା ଆକୃଷ୍ଟ ହୋଇ ନଥିବେ ଏବଂ ସେ ବିକଳ କ୍ରନ୍ଦନ କରିଥିବେ ଚରମ ବିପଦର ସମ୍ମୁଖୀନ ହୋଇ ରାବଣକୁ ଯଥେଷ୍ଟ ବାଧା ଦେଇଛନ୍ତି ମାନେ ବାଧାଦେବା ସ୍ୱାଭାବିକ ତାର ବାହୁ କିମ୍ବା ହାତ କିମ୍ବା ମୁହଁକୁ କାମୁଡ଼ି ଥାଇପାରନ୍ତି ଏବଂ ରାବଣ ଏକ ବେପରୁଆ ହୋଇ ସେସବୁ ସହ୍ୟ କରିଥାଇପାରେ ମାନେ ତା'ର ପ୍ରକୃତି ଯାହା ବିଶେଷତଃ ରାକ୍ଷସ ଅସୁର ସବୁ ଏପରି କରିଥାନ୍ତି ତୁମର ଦଂଶନରେ ମୁଁ କୃତାର୍ଥ କୋମଳାଙ୍ଗୀ ବଲ୍‌କଲଧାରୀ ସ୍ତ୍ରୈଣ ରାମଚନ୍ଦ୍ରଙ୍କୁ ତ୍ୟାଗ କରି ମୋର ପାଣିଗ୍ରହଣ କର ତୁମେ ତ୍ରିଭୁବନ ମୋହିନୀ ସୁନ୍ଦରୀଙ୍କ ପାଇଁ ସେ ପୂରା ଅଯୋଗ୍ୟ ମାନେ misfit ଏପରି କହୁ ଥାଇପାରେ ସୀତା ତାକୁ ବିଧା, ଗୋଇଠା, ସବୁ ପ୍ରହାର

କରୁଥାନ୍ତି ଏବଂ ରାବଣ ଆନନ୍ଦରେ ସହୁ ଯାଉଥାଏ ଅଟ୍ଟହସ
ଜୋର୍‌ରେ ପିଠ ସୁନ୍ଦରୀ ତୁମର ସମ୍ପର୍ଶରେ ମୁଁ ଧନ୍ୟ ଏପରି
କହିଥାଇପାରେ ସୀତା ଓ ସୀମାହୀନ ଅପମାନ ସହ୍ୟ ନ କରିପାରି
ପୁଷ୍ପକ ବିମାନରୁ ତଳକୁ ଡେଇଁ ଜୀବନ ବିସର୍ଜନ କରିବାକୁ
ଉଦ୍ୟତ ହେଉଥିବେ କିନ୍ତୁ କେଜାଣି ରାବଣ ତାହା ଜାଣିପାରି
ତାଙ୍କ ହାତକୁ ଜ ବୃଷ୍ଟ ଧରିଛି ଆତ୍ମହତ୍ୟା ମହାପାପ ବୋଲି
ବୁଝାଉଛି ତୁମେ ଯଦି ହଲ୍‌ଚଲ୍ ହୁଅ ତେବେ ତୁମ ସହ ତୁମ
ସ୍ୱାମୀ ଦେବରଙ୍କୁ ହତ୍ୟା କରିବ ବୋଲି ଧମକାଉଛି ସୀତା
ଅଗତ୍ୟା ଦୁର୍ଗାଙ୍କୁ ସ୍ତୁତି କରୁଥିବେ ନାରାୟଣଙ୍କୁ ପ୍ରାର୍ଥନା
କରୁଥିବେ । ହେ ଭଗବାନ ତୁମେ ମୃଗୁଣୀର ସ୍ତୁତି ଶୁଣିଥିଲ,
ଗଜ ଉଦ୍ଧାରଣ କରିଥିଲ, ଦ୍ରୌପଦୀକୁ ବସ୍ତ୍ରଦାନ କରିଥିଲ,
କାଞ୍ଚି ଅଭିଯାନରେ ଘୋଡାଚଢ଼ି ଯୁଦ୍ଧକ୍ଷେତ୍ରକୁ ଛୁଟିଥିଲ—
ମୋ ପରି ନିଃସହାୟା ନାରୀର ଗୁହାରି ଶୁଣ ପ୍ରଭୁ ଏପରି ସେ
କହୁଥିବେ ଅଶ୍ରୁରେ ଭିଜି ଯାଇଥିବ ତାଙ୍କ ଉଜ୍ଜ୍ୱଳ ବଦନ
କିମ୍ବା ସେ ତ ସତୀ ଶିରୋମଣି ସେ ତ ଶାପ ଦେଇପାରିଥାନ୍ତେ
ପାପିଷ୍ଠ ରାବଣ ତ ଧ୍ୱଂସ ହୋଇଥାନ୍ତା ତାଙ୍କ ଶାପ ମାତ୍ରକେ

ପାପିଷ୍ଠ ରାବଣ ଜାଣିନୁ ତୁ ମୋର ପରାକ୍ରମ କେତେ ଜାଣିନୁରେ
ଜନକ ନନ୍ଦନୀ ସତୀ ଶିରୋମଣି ଶାପ ଦେଇଦେବ ଏ କ୍ଷଣିରେ
ପାପିଷ୍ଠ ରାବଣ ··

ଚୋର କରୁଛୁ ମୁହିଁ ହାନି କରି ନାହିଁ ହରଣ ତୁ କଲୁ
କାହିଁକିରେ । କାନ୍ଦ କାନ୍ଦ ଏବେ ମୋ ସୁନ୍ଦର ସ୍ୱାମୀ ଜୀବନ
ହାରିବେ ତୋ ଲାଗିରେ—ପାପିଷ୍ଠ ରାବଣ···

ଯାହା କଲୁ ପଛେ ମୋତେ ଏବେ ଛାଡ ମୋ ସ୍ୱାମୀ ନିକଟେ
ନେଇ କରେ ନୋହିଲେ ମୁଁ ତୋତେ ଶାପ ଦେଇଦେବି
ଧ୍ୱଂସ ହୋଇଯିବୁ କ୍ଷଣିକରେ ପାପିଷ୍ଠ ରାବଣ···

ଏପରି ସେ କଲେ ନାହିଁ କାହିଁକି କହିପାରିବେ ବିଜ୍ଞଜନେ ଏପରି
ସେ କଲେ ନାହିଁ କାହିଁକି

ରାଜୁ : ଧେତ୍, ବନ୍ଦକର । ଏପରି କ'ଣ ରାମାୟଣରେ ଲେଖାଅଛି ?

ପ୍ରଶାନ୍ତ : ଏ ଛବି ଇଣ୍ଡିଆନ୍ ରାମାୟଣ ।

ଅଜୟ : ଆଚ୍ଛା ହଜୁର୍, ରଜନୀଶଙ୍କ ପନ୍ଥାରେ କ'ଣ ପ୍ରକୃତ ଆନନ୍ଦ, ଜିବ୍ୟଞ୍ଜନ ପାଇ ହୁଏ ?

ସମ୍ପୂର୍ଣ୍ଣାନନ୍ଦ : ତତ୍‌କ୍ଷଣରେ ନିର୍ବାଣ ଲାଭ ହୁଏ ।

ପ୍ରଶାନ୍ତ : କିପରି ?

ସମ୍ପୂର୍ଣ୍ଣାନନ୍ଦ : କର୍ମଶାଳାରେ ବୁଝିପାରିବ—

ରାଜୁ : କର୍ମଶାଳା ବିଷୟ ତ କହିଲେ, ଆଉ କିଛି ବାକି ରହିଗଲା କି—

ଅଜୟ : ବୋଧେ ସେ ରମର୍ମ ବିଷୟ କୁହାଯାଇ ନାହିଁ ।

ସମ୍ପୂର୍ଣ୍ଣାନନ୍ଦ : ହଁ ସମବେତ ପ୍ରାର୍ଥନା, ସମବେତ ତନ୍ତ୍ର ସାଧନା

ରାଜୁ : ସମବେତ ତନ୍ତ୍ର ସାଧନା, ସେ କ'ଣ ?

ପ୍ରଶାନ୍ତ : କ'ଣ ସତରେ ଜାଣିନା ?

ରାଜୁ : ତଥାପି ଗୁରୁଦେବ ବ୍ୟାଖ୍ୟା କଲେ ଭଲ ହୁଅନ୍ତା ।

ସମ୍ପୂର୍ଣ୍ଣାନନ୍ଦ : ସେଠାରେ ଜାଣିପାରିବ ।

ପ୍ରଶାନ୍ତ : କିନ୍ତୁ ସାର୍ ସମବେତ ତନ୍ତ୍ର ସାଧନା ପାଇଁ ଅନୁଷଙ୍ଗିକ ବ୍ୟବସ୍ଥା କରିବା ତ ନିହାତି ମୁସ୍କିଲ୍ ବ୍ୟାପାର । ଏପରି କ୍ଷୁଦ୍ର ସହରରେ willing partners ପାଇବା ନିଶ୍ଚୟ ମୁସ୍କିଲ୍ ।

ରାଜୁ : ଅଜୟ ସେ ଦୃଷ୍ଟିରେ ଅଛନ୍ତି

ଅଜୟ : ତଥାପି, ମୁଁ କ'ଣ କହୁଥିଲି କି ସେଥିପାଇଁ କିଛି ରେଷ୍ଟ୍ରିକ୍‌ସନ୍ ରହିବା ଦରକାର । ନଚେତ୍ ସମସ୍ୟା ହୋଇପାରେ, ବିଶେଷତଃ ଆଇନ ଶୃଙ୍ଖଳା ସମସ୍ୟା ।

ପ୍ରକାଶ : କିନ୍ତୁ ଏସବୁ କ'ଣ ? ଦରକାର କର୍ମଶାଳା ମାନେ— ଏ ତନ୍ତ୍ର ସାଧନାକୁ ବନ୍ଦ କରିଦେଲେ ଅସୁବିଧା କ'ଣ ?

ସଂପୂର୍ଣ୍ଣାନନ୍ଦ : ହାକମ୍ ମହାଶୟ ବ୍ୟବସ୍ଥା କରିଛନ୍ତି ସେତେବେଳେ

ପ୍ରକାଶ : ହାକମ୍ ମହାଶୟ ଯାହା କିଛି ବ୍ୟବସ୍ଥା କଲେ ଆମେ କ'ଣ ନିଶ୍ଚୟ ସାମିଲ ହୋଇଯିବୁ ହଜୁର୍ ।

ସଂପୂର୍ଣ୍ଣାନନ୍ଦ : ନିଶ୍ଚୟ, ସନ୍ଦେହର ଅବକାଶ କେଉଁଠି ?

ପ୍ରକାଶ : ନା

ସଂପୂର୍ଣ୍ଣାନନ୍ଦ : ମୁଁ ବି ଚାହେଁ, ଏ କର୍ମଶାଳା ହେଉ ।

ପ୍ରକାଶ : କିନ୍ତୁ କାହିଁକି ?

ଅଜୟ : ସେ ପ୍ରଶ୍ନ ପଚାରିବାର ଅଧିକାର ତୁମର ନାହିଁ ତୁମେ ଜାଣ—

ପ୍ରକାଶ : କିନ୍ତୁ ଶୋଷଣ, ଦୁର୍ନୀତି, ଅପକର୍ମ ବିରୋଧ କରିବା ନିହାତି ଆବଶ୍ୟକ ।

ସଂପୂର୍ଣ୍ଣାନନ୍ଦ : ଯାହା କୁହାଯାଉଛି, ତାହାହିଁ କର ।
ମୁଁ ତୁମକୁ ସମସ୍ତ ପାପରୁ, ସମସ୍ତ ବିପଦରୁ ଉଦ୍ଧାର କରିବି ।

ପ୍ରକାଶ : କିନ୍ତୁ ଏହା ଅନ୍ୟାୟ

ସଂପୂର୍ଣ୍ଣାନନ୍ଦ : ଅର୍ଜ୍ଜୁନ ବି ପ୍ରଥମେ ଏପରି ଶଙ୍କାଗ୍ରସ୍ତ ହୋଇଥିଲେ ।
କିନ୍ତୁ ମାଧବଙ୍କ ପାଇଁ ତାଙ୍କର ଅନାବିଳ ଭକ୍ତି, ବିଶ୍ୱାସ ଥିଲା ।

ପ୍ରକାଶ : ମୋର ନାହିଁ । ଶ୍ରୀକୃଷ୍ଣ ବି ନାହାନ୍ତି ଅଜର ଏ ଦୁନିଆରେ ।

ରାଜୁ : ନ୍ୟାୟ ଅନ୍ୟାୟର ପରିଭାଷା ବହୁ ଦିନରୁ ବଦଳି ଗଲାଣି

ପ୍ରକାଶ : କିନ୍ତୁ ମୁଁ ଏ ଭ୍ରଷ୍ଟାଚାର, ଦୁର୍ନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବି ।

ଅଜୟ : ତୁମ ସ୍ୱର ବନ୍ଦ କରି ଦିଆଯିବ ।

ପ୍ରଶାନ୍ତ : ଅହଂକାର ସ୍ପର୍ଦ୍ଧିତ ତୁମ ମସ୍ତକ ଚରଣ ପାଇଁ ଅବନମିତ କରାଯିବ ।

ସମ୍ପୂର୍ଣ୍ଣାନନ୍ଦ : ତୁମେ ଜାଣ, ହାକମ୍ ମହାଶୟ ଏବଂ ଗୁରୁଦେବ ଯାହା ଆଦେଶ ଦିଅନ୍ତି, ତାହାହିଁ ତୁମ କର୍ତ୍ତବ୍ୟ ।

ପ୍ରକାଶ : ମୋର ବିବେକ ଓ ସ୍ୱାଧୀନତା ବନ୍ଧକ ପଡ଼ିନାହିଁ...

ପ୍ରକାଶ : ମୋର ବିବେକ ଓ ସ୍ୱାଧୀନତା ବନ୍ଧନମୁକ୍ତ ନୁହେଁ ।

ରାଜ୍ : ଅର୍ଥାତ୍

ପ୍ରକାଶ : ଅନ୍ୟାୟ ଆଦେଶର ପ୍ରତିରୋଧ କରିବି ।

ପ୍ରଶାନ୍ତ : ବଡ଼ ବିଚିତ୍ର ସମସ୍ୟା । ଗୁରୁଦେବ, କ'ଣ କରାଯିବ ବର୍ତ୍ତମାନ ।

ସଂପୂର୍ଣ୍ଣାନନ୍ଦ : ହାକମ୍ ମହାଶୟଙ୍କ ସହ ଜରୁରୀ ଆଲୋଚନା ଦରକାର । କିନ୍ତୁ ପ୍ରକାଶ ସବୁ ଅପ୍ରୟୋଜନ ହୋଇଗଲାଣି ଯେତେବେଳେ, ହଠାତ୍ ପ୍ରୋଗ୍ରାମ୍ ବାତିଲ୍ କରିଦେବା ମୁସ୍କିଲ୍ । ପୁଣି ଖୋଦ୍ ହାକମ୍ ମହାଶୟ ଚାହାନ୍ତି ସେ ପ୍ରୋଗ୍ରାମ୍ଟି ହେବା ନିହାତି ଆବଶ୍ୟକ । ଆମେ ଏତେ ସବୁ ଚିନ୍ତା କରିବା କ'ଣ ଦରକାର ? ଠିକ୍ ଅଛି, ତୁମେ ଯଦି ଚାନ୍ଦା ସଂଗ୍ରହ କରି ପାରିବ ନାହିଁ ତେବେ ଅନ୍ୟ କାହାକୁ ଦାୟିତ୍ୱ ଦିଆଯିବ । କିନ୍ତୁ ନିଜ ସୀମା ବହିର୍ଭୁତ କୌଣସି କାର୍ଯ୍ୟ କରିବା ଠିକ୍ ନୁହେଁ ।

ପ୍ରଶାନ୍ତ : ହଁ, ତୁମେ ଯଦି ଏ ସବୁରେ ସାମିଲ୍ ହେବାକୁ ଚାହୁଁନା, ତେବେ ନ ହୋଇପାର ।

ପ୍ରକାଶ : ନା, ମୁଁ ଏସବୁ ପ୍ରଘଟ କରିଦେବି । ଦୁର୍ନୀତି, ଭ୍ରଷ୍ଟାଚାର ବିରୁଦ୍ଧରେ ଜନଜାଗରଣ ସୃଷ୍ଟି କରିବି ।

ରାଜ୍ : You will do nothing of the kind,

ଅଜୟ : ଗୁରୁଦେବ, ସବୁଦିନ ପାଇଁ ଏହାର ପାଟି ବନ୍ଦ କରିଦେବା ଉଚିତ ।

ପ୍ରଶାନ୍ତ : କିନ୍ତୁ ତାହା କ'ଣ ଠିକ୍ ହେବ ?

ଅଜୟ : ଏଣୁତ୍ସ ଅନ୍ୟ କୌଣସି ବିକଳ୍ପ ନାହିଁ ।

: ଅନ୍ୟ କିଛୁ ପନ୍ଥା ଚିନ୍ତା କରୁଥାଉ

: You dare not touch me

ସମ୍ପୂର୍ଣ୍ଣାନନ୍ଦ : ଦେଖ ପ୍ରକାଶ, ସଙ୍ଘ, କର୍ମଶାଳା ତ ଆମେ ବାତିଲ୍ କରି ପାରିବା ନାହିଁ ।

ପ୍ରକାଶ : ଆମେ ତାଙ୍କୁ ବାଧ୍ୟ କରିବା ଏସବୁ ବାତିଲ୍ କରିବା ପାଇଁ ।

ସମ୍ପୂର୍ଣ୍ଣାନନ୍ଦ : ଯଦି ସେ ନ ଶୁଣନ୍ତି

ପ୍ରକାଶ : ହରତାଳ କରିବା, ସଭା ସମିତି ଜରିଆରେ ତାଙ୍କ ସ୍ୱରୂପ ପ୍ରକାଶ କରିବା । ଅନଶନ, ଧର୍ମଘଟ କରିବା ତାଙ୍କ ହୃଦୟ ପରିବର୍ତ୍ତନ ପାଇଁ

ସଂପୂର୍ଣ୍ଣାନନ୍ଦ : Enough, Knock him out—

(ବ୍ରଜ, ଅଜୟ ପ୍ରକାଶର ମୁଣ୍ଡକୁ ଶକ୍ତ ପ୍ରହାର କରିଛନ୍ତି । ତତ୍ପରେ ପ୍ରକାଶକୁ ବାନ୍ଧି ପକାଇଛନ୍ତି । ପ୍ରକାଶ ଚିତ୍କାର କରି ଉଠିଛି, ପରେ ବେହୋସ୍ ହୋଇ ଯାଇଛି ।)

ସମ୍ପୂର୍ଣ୍ଣାନନ୍ଦ : ଏଥର କିଛି ଡ୍ରଗ୍ ତା ପାଟିରେ ଭର୍ତ୍ତି କରି ଦିଅନା—

ବ୍ରଜ : ହ୍ୱିସ୍କି ପେଗ୍‌ଟାଏ ହେଲେ କିପରି ହୁଅନ୍ତା ?

ସଂପୂର୍ଣ୍ଣାନନ୍ଦ : ସୁନ୍ଦର ! ତାକୁ ହସାଅ, ତାକୁ କନ୍ଦାଅ ।

ଅଜୟ : ହୁ ହୁ ହୁ

ବ୍ରଜ : ହୁ ହୁ ହୁ ହି ହି ହି

ପ୍ରଶାନ୍ତ : ହୁହୁହୁ ହିହିହି ହେହେହେ

ବ୍ରଜ : ହଜୁରୁ ଆପଣଙ୍କ ପାଇଁ ବି ଟିକେ

(ପେଗ୍‌ଟେ ଢାଳିଛି)

ସଂପୂର୍ଣ୍ଣାନନ୍ଦ : ହଁଜ, ଚଳିବ ।

ପ୍ରଶାନ୍ତ : ଓଃ କି ଯେ ସମସ୍ୟା !

ରାଜୁ : କିଛି ନୁହେଁ, ଏପରି ବହୁ ସମସ୍ୟାର ମୁକାବିଲା କରିଛି ଦେବ । ଆଚ୍ଛା ଅଜୟ ବାବୁ, ଆପଣଙ୍କ କିଛି ସମସ୍ୟା ନାହିଁ ତ ?

ଅଜୟ : ହଁ, ମୁଁ କ'ଣ କହୁଥିଲି କି ତନ୍ତ୍ର ସାଧନା ପାଇଁ willing partner ଯୋଗାଡ କରିବା ମୁସ୍କିଲ୍ । ତନ୍ତ୍ର ସାଧନା ଏକ ଶ୍ରେଷ୍ଠ ଗ୍ରୁପ୍‌ରେ ସୀମାବଦ୍ଧ ରହିବା ଉଚିତ ।

ସଂପୂର୍ଣ୍ଣାନନ୍ଦ : ତାହା ଠିକ୍

ଅଜୟ : କିନ୍ତୁ ସାର୍, ଏ ପ୍ରକାଶଟିକୁ କ'ଣ କରିବା ?

ସଂପୂର୍ଣ୍ଣାନନ୍ଦ : ଶେଷ କରି ଦେଉନା

ଅଜୟ : ହତ୍ୟା ? ତା କିପରି ସମ୍ଭବ ?

ରାଜୁ : ହଜୁର୍ କ'ଣ ସେୟା କହିଲେ ? ଅଧିକ ଡ୍ରଗ୍ ଖୁଆଇ ଅଧିକ ହ୍ୱିସ୍କି ପିଆଇ ପାଗଳ ଗାରଦରେ ଛାଡ଼ି ଦେଲେ ଚଳିବ

ସଂପୂର୍ଣ୍ଣାନନ୍ଦ : ବହୁତ ସୁନ୍ଦର

ପ୍ରଶାନ୍ତ : ପେଟ୍ରୋଲ୍ ଢାଳି ନିଆଁ ଲଗାଇଦେଲେ

ରାଜୁ : ନା, ରିସ୍କ୍ ବେଶି । ବରଂ ଇଲେକ୍ଟ୍ରୋକ୍ଲେକସନ୍ କମ୍ବା ପୋଟାସିୟମ୍ ସାଇନାଇଡ୍ ।

ଅଜୟ : କିନ୍ତୁ ବସ୍ତିର ପିଲାଛୁଆ ଅଛନ୍ତି ଯେ, ମା ଟ୍ରେଜଣ୍ଡ ସବୁ

ସଂପୂର୍ଣ୍ଣାନନ୍ଦ : ସେ ବସ୍ତି ରହିବାହିଁ ବିପଜ୍ଜନକ । ଶେଷ କରିଦେବା ହିଁ ଭଲ । କିନ୍ତୁ ତା ପୂର୍ବରୁ ଆଜି ଏକ ପେଗ୍ ହ୍ୱିସ୍କି ହୋଇଯାଉନା

(ପିଇଛନ୍ତି)

ପ୍ରଶାନ୍ତ : କିନ୍ତୁ ସାର୍ ମୋର ହୋଲ୍‌ସେଲ୍‌ର ଲାଇସେନ୍‌ସ୍

ନନ୍ଦ : ତା' ତ ନିଶ୍ଚୟ, ପ୍ରଥମେ କର୍ମଶାଳା ହୋଇପାରେନା

: ସାର୍, ସେ ପାଞ୍ଚ ଜଣଙ୍କୁ ସୁପରସିଡ଼୍ କରି ମୋର ପ୍ରମୋଶନ୍ ଯେପରି ନିଶ୍ଚିତ ପୁଣି କ୍ୟାପିଟାଲ୍‌ରେ ହିଁ ପୋଷ୍ଟିଂ ।

ମୂର୍ଖାନନ୍ଦ : କହୁଛୁ ପରା, ଅଲ୍‌ବତ୍ ହେବ ।

ରାଜୁ : ସେମାନେ ଯେତେ ଚାନ୍ଦା ଦେବେ, ତା ଠାରୁ ଅଧିକ ଚାନ୍ଦା ଦେବା ପାଇଁ ମୁଁ ପ୍ରସ୍ତୁତ । ଦୟାକରି ଜଣାଇ ଦେବେ ।

ଅଜୟ : ହଜୁର୍ କରପୋରେସନ୍ ଚେୟାରମ୍ୟାନ ପଦଟା ଯେପରି ମୋର କରଛଡ଼ା ହୋଇ ନଯାଏ

ସଂମୂର୍ଖାନନ୍ଦ : ଠିକ୍ ଅଛି । ସବୁକିଛି ହୋଇପାରିବ । ପ୍ରଥମେ କର୍ମ-ଶାଳାଟି ସୁରୁଖୁରୁରେ ଶେଷ ହେଉ । ମୋ ବିଦେଶ ଭ୍ରମଣ ମୁକ୍ତରୁ ସବୁ କିଛି ଠିକ୍ ହୋଇଯାଇଥିବ । କିନ୍ତୁ ଏ ପ୍ରକାଶଟିକୁ ଶେଷ କରିଦେବା ଦରକାର । ମୋ ଆଦେଶର ଅବଜ୍ଞା ଏତେ ବଡ଼ ଅପମାନ । ଦୁଷ୍ଟବ୍ରଣର ନିପାତ ହିଁ ଦରକାର ।

ଅଜୟ : କିନ୍ତୁ ହଜୁର୍, ହାକିମ୍ ମହାଶୟଙ୍କୁ ଜଣାଇବା ଦରକାର ନାହିଁ ?

ସମୂର୍ଖାନନ୍ଦ : ପରେ ଜଣାଇଦେବା

ଅଜୟ : କିନ୍ତୁ ପଟାସିୟମ୍ ସାଇନାଇଡ଼୍

ସମୂର୍ଖାନନ୍ଦ : କିଛି ଦରକାର ନାହିଁ

ପ୍ରଶାନ୍ତ : କିନ୍ତୁ

ରାଜୁ : କିନ୍ତୁ କ'ଣ ? ଶୀଘ୍ର ଏ କାମଟି ଶେଷ କରିଦେବା ଦରକାର

ଅଜୟ : ହଉ, ଚାଲ

ପ୍ରଶାନ୍ତ : ହଁ ଚାଲ

ସମସ୍ତେ ମିଶି ପ୍ରକାଶର ଚଣ୍ଡି ଦେବା ପାଇଁ ଉଦ୍ୟତ। ହଠାତ୍ ପ୍ରବେ କରିଛି ପୂର୍ବବର୍ଣ୍ଣିତ ବିଶାଳ ବ୍ୟକ୍ତି। ସମ୍ପୂର୍ଣ୍ଣାନନ୍ଦ, ରାଜୁ, ଅଜୟ, ପ୍ରଶାନ୍ତ ଫ୍ରିଜ ବିଶାଳକାୟ ବ୍ୟକ୍ତିଟି ଏମାନଙ୍କ ପ୍ରଦକ୍ଷିଣ କରି ପଥର ନିକଟକୁ ଯାଇଛି। ଝଣ ସମ୍ମୁଖରେ ହାତ ଦୁଇଟି ବିସ୍ତାର କରି ମୁଣ୍ଡକୁ ଝୁଙ୍କାଇ ନିଶ୍ଚଳଭାବେ ଠିଆ ହୋଇଛି।

ନେପଥ୍ୟରୁ 'ଗୋବିନ୍ଦଂ ଭଜ ମୂଢ଼ମତେ'ର ସ୍ୱର।

